ଯଶୋଧାରା ମିଶ୍ର ଆମ ସମୟରେ ନିର୍ଜନତାର, ଏକୁଟିଆ ମଣିଷର ସଫଳ କଳାକାର । ...ଏମିତି ଦେଖିବାକୁ ଗଲେ– ଯଶୋଧାରାଙ୍କ ଚରିତ୍ରମାନେ ଜାଣନ୍ତି – କଣ ଯେ ଦୀର୍ଘସ୍ଥାୟୀ, କିଛି ନୁହେଁ, କେହି ନୁହେଁ– ଦୀର୍ଘସ୍ଥାୟୀ କେବଳ ଏଇ ରୁଗୁରୁଗୁ ଅପ୍ରାପ୍ତିର ଶୋକ, ପାଇ ହରେଇ ଦେବାର ଶୋକ, ଜହ୍ନରାତିର ପତ୍ରଝଡ଼ା, ଏକାକୀ ଚଢ଼େଇ ଦେଖିବାର ଶୋକ ।

...ତେବେ ସମାଧାନ କଣ ? ବାନ୍ଧି ରଖିବାରେ ଯେ ସ୍ନେହ ନଥାଏ । ସେତିକିରେ ଯେ ସ୍ନେହ ମଉଳିଯିବ, ଝଡ଼ିପଡ଼ିବ । ବାହୁବନ୍ଧନ ହୁଗୁଳା ନକଲେ ଭଲପାଇବାର ମଣିଷ ନିଜର ହୋଇପାରେନି– ସେ ବସ୍ତୁରେ ପରିଣତ ହୋଇଯାଏ, ଅଧିକାରଗତ "ନିଜର" ହୋଇଯାଏ । ଏଇ ଦ୍ୱନ୍ଦ୍ୱବୋଧ, ଏଇ ଦ୍ୱିଧାଗ୍ରସ୍ତ ଅନୁଭବ ହିଁ ଯଶୋଧାରାଙ୍କ ଗଳ୍ପରେ ଏକାକୀତ୍ୱର ପ୍ରକୃତ ପରିଚୟ ଓ ସେଇଥିପାଇଁ ବୋଧହୁଏ ତାହା ଏତେ ମର୍ମସ୍ପର୍ଶୀ ।

...ନାନା ବାଗର ଏକୁଟିଆ ମଣିଷ ଯଶୋଧାରାଙ୍କ ଗଳ୍ପସାରା । ସେମାନେ ନିଜ ଏକୁଟିଆପଣକୁ ଧରିବସି ଝିଓରି ବାଢ଼ନ୍ତିନି, ...ସଭିଙ୍କ ଭିତରେ ଥାଇ ବି ସେମାନେ ନିଜର ଏକାକୀତ୍ୱ ଭୋଗ କରନ୍ତି । ଏଥିପାଇଁ କାହାକୁ ଦାୟୀ କରିବାର ନଥାଏ । କାରଣ ଦାୟୀ ତ ନିଜେ, ନିଜର ସ୍ପର୍ଶକାତର ହୃଦୟ, କଅଁଳ ସତେଜ ମନ । ଯିଏ ଦଳଛଡ଼ା ହୋଇ ଯାଇନି, ପଥର ପାଲଟି ଯାଇନି, ଯିଏ ଆପଣାକୁ, ଅନ୍ୟ ସହ ସଂପର୍କକୁ ସତତ ଖେଳେଇ ଖେଳେଇ ଦେଖୁଛି । ସମୟକୁ ଖେଳେଇ ଦେଖୁଛି, ମୁହୂର୍ତ୍ତକୁ ଧୀରେ ଧୀରେ ପାଟିରେ ପକେଇ ଚାଖୁଛି, ଆସ୍ୱାଦ ବୁଝୁଛି । ଅମୃତ ଓ ବିଷ ଏକାଠି ପିଉଛି –ପ୍ରେମର ଅମୃତ ଓ ନିର୍ଜନତାର ବିଷ । ଅନ୍ୟ ଅର୍ଥରେ କହିଲେ ନିର୍ଜନତାର ଅମୃତ ଓ ବିଷ । ପ୍ରେମର ଅମୃତ ଓ ବିଷ ।

କିନ୍ତୁ ସବା ଶେଷରେ ରହିଯାଉଛି ଏକ ବିଶେଷ ଆବେଗ ଯାହା ସ୍ନେହଠୁଁ ବଡ଼, ନିର୍ଜନତାଠୁଁ ବଡ଼ । ଯାହା ସମୟ ଚକ୍ରର ଅନ୍ତର୍ଭୁକ୍ତ ହୋଇ ମଧ୍ୟ ଅସମୟର ।

–ସୀତାକାନ୍ତ ମହାପାତ୍ର

ରେଖାଚିତ୍ର—ଲେଖିକା : ଯଶୋଧାରା ମିଶ୍ର, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ - ୨, ପ୍ରଚ୍ଛଦପଟ : ଚନ୍ଦନ ସିଂ ଭଟ୍ଟି, ଡ଼ି.ଟି.ପି : ଫିୟୁଚର୍ ଭିଜନ୍, କଟକ, ମୁଦ୍ରଣ : ଗ୍ରାଫିକ୍ ଆର୍ଟ ଅଫସେଟ୍ ପ୍ରେସ୍, ନୂଆପାଟଣା, କଟକ ।



**REKHACHITRA**—Author : Yashodhara Mishra, Publisher : Sahadev Pradhan, Friends' Publishers, Binodbehari, Cuttack - 2, Orissa (India), Cover Design : Chandan Sing Bhatti, (Artist : Budhni Bai) D.T.P. by : Future Vision, Cuttack, Printer : Graphic Art Offset Press, Naupatna, Cuttack.

**First Edition : 1997**

**Price : Rs. 40**

ISBN 81-7401-185-4

ମା,

ତମରି ଦୃଷ୍ଟିକୁ ଅନୁସରଣ କରି ମୁଁ ଦେଖିଶିଖିଛି ସେ ଗନ୍ଧ ସଂସାରକୁ, ଯାହା ଆଖିକୁ ଦିଶୁଥିବା ଦୁନିଆର ତଳେ ତଳେ ଛାଇପରି ଥାଏ ।

ତମ ସ୍ମୃତିରେ ଏ ରେଖାଚିତ୍ର ।

— ଧାରା

# ସୂଚୀ





# ଯାତ୍ରୀ

ଫେରି ଚାହିଁଲେ ଦିଶୁଚି, ଏଥର ପୃଥିବୀ ପିଠିରୁ ସେମାନେ ଉଠି ଆସିଲେଣି ଖଣ୍ଡେ ବାଟ । ଆଗକୁ ଏବେ କିଛି ଦିଶୁନାଇଁ, ଖାଲି ଚଢ଼ାଣି ରାସ୍ତା, ଆଉ ଦଳକୁ ଦଳ ଯାତ୍ରୀ ଆଗରେ, ପଛରେ, ପାଖାପାଖି । ମୀରାକୁ ଲାଗିଲା, ଏଥର ସତରେ ହାଲୁକାପଣଟିଏ ଛାଇ ଆସୁଛି, କେତେଦିନୁ କେମିତି ଗୋଟାଏ ଆକଟାମାକଟା ରୁନ୍ଧିହେଲା ଭାବଟିଏ ବାନ୍ଧି ପକେଇଥିଲା ତାକୁ, ସେଇଟା ଓହ୍ଲେଇ ଯାଉଚି ଦେହରୁ । ଏଠିକି ଆସିବା ଆଗରୁ ଡର ଲାଗୁଥିଲା ଏତେ ଗୁଡ଼ାଏ ବାଟ, ପୁଣି ଚଢ଼ାଣି ରାସ୍ତା ଚାଲିପାରିବ କି ନାହିଁ । ଏଣିକି ଆଉ ଚିନ୍ତା ଲାଗୁନାହିଁ, ମନେ ହେଉଚି ଏତେ ଲୋକ ଚାଲିଛନ୍ତି, ଚାଲିଯିବା ଆମେ ବି ।

ରେଣୁକୁ ସେ କହିଲା—''ଏତେ ବେଳକୁ ଆମେ କ'ଣ କରୁଥାନ୍ତେ କହିଲୁ ? ଅଫିସ୍ ସାରି ଝାଳନାଳ ଧୂଳି ଧୂଆଁ ହେଇ ବସ୍‌ରେ ଓହଳି ଥାଆନ୍ତେ । ପହରିଦିନ ଯାଏଁ କିଏ ଜାଣିଥିଲା ଭାଗ୍ୟରେ ଯାତ୍ରାଟିଏ ଅଛି ବୋଲି ?''.

ରେଣୁ ପାଖରେ ଚାଲୁଥିଲା ସଂବିତ୍ । ତାକୁ ଥରେ ଅନେଇ ଦେଇ ମୀରା କାନ ପାଖକୁ ନଇଁପଡ଼ି ରେଣୁ କହିଲା—''କିଏ ଜାଣିଥିଲା ସତରେ ? ଦେବୀଙ୍କ ମହିମା ।''

ପଛରୁ ରେଣୁର ଭାଉଜ ସୁନୀତା ମିଠା ଆକଟ କଲେ—''ତମେ ଦି ସଖୀ ଏତେ ଖିଲିଖିଲି ହୁଅନି । ଦେବୀ ମାତାଙ୍କ ଡାକରାରେ ଆସିଚ, ତାଙ୍କଠି ଧ୍ୟାନ ଦିଅ ।''

ରେଣୁ ଜିଭ କାମୁଡ଼ିଲା, ହାତ ଯୋଡ଼ି କ୍ଷମା ମାଗିନେଲା ଦେବୀଙ୍କଠୁଁ ନିଜ ଫେଚକାମୀ ଲାଗି । ମୀରା ବି ହାତ ଯୋଡ଼ିଲା । ମନକୁ ଆକଟ ନକଲେ ଏତେ ବାଟ ଆସିବା, କଷ୍ଟ କରି ପାହାଡ଼ ଚଢ଼ିବା ବୃଥା । କିଛି ନହେଲେ ଚାରିପାଖରେ ପରିବେଶରେ ମନ ଲଗେଇ ହେବ । ପୁଣିଥରେ ସେ ଘର-ଅଫିସ୍ ଅତୁଆ-ତତୁଆ ଜୀବନକୁ ଫେରିଯିବା ଆଗରୁ ଦି'ଦିନ ଅନ୍ତତଃ ପୂରା ଛୁଟି ଦେଇହେବ ମନକୁ । ଆଉ କିଏ ଜାଣେ, ଦେବୀଙ୍କର କୃପା ହେଲେ ସତରେ ମିଳିଯାଇପାରେ କିଛି ବରଦାନ ।

ଅଫିସ୍‌ରେ ଛୁଟି, ଘରେ ବାପା ମା'ଙ୍କ ଅନୁମତି । କିଛି ମିଳିବାରେ ଅସୁବିଧା ହେଇନଥିଲା । ସମସ୍ତଙ୍କର ଉଣାଅଧିକେ ବିଶ୍ୱାସ ଯେ ବୈଷ୍ଣୋଦେବୀଙ୍କ ଡାକରା ଏମିତି

ହିଁ ଆସେ, କିଛି ଆଗରୁ ଭାବି ନଥିବ ହଠାତ୍ ପହଞ୍ଚିଯିବ ଗୋଟାଏ ସୁଯୋଗ । ଖାଲି ଅଫିସ୍‌ର ସୁରଜିତ୍ ଚୋପ୍ରା, ଖଦୀ ଝୁଲାମୁଣି ମୋଟା ଚଷମା ଶୋଭିତ ବୁଦ୍ଧିଜୀବୀ କହିଥିଲା—''ସାବଧାନରେ ଯିବ । ଗତ ବର୍ଷ ଗଙ୍ଗାରାମ ବିଚରା ବି ଯାଇଥିଲା ଦେବୀ ଡାକରାରେ । ଅତ୍ୟଧିକ ବାତ୍ସଲ୍ୟରେ ଡାକିଥିଲେ ତାକୁ ଦେବୀ ମା, ରଖିନେଲେ ପାଖରେ ପର୍ମାନେଣ୍ଟ୍‌ଲି ।''

ରେଣୁ ଅତିରଞ୍ଜିତ ଭାବେ ଶିହରି ଉଠି କାନରେ ହାତ ଦେଲା, ନାକ କୁଞ୍ଚେଇ କହିଲା—''ଆପଣଙ୍କ ଚିରାଚରିତ ନିମ୍ନ ରୁଚିର ଜୋକ୍‌ରୁ ଦୟାକରି ଆମକୁ ସେଆର୍ କରିବେ କି ?''

ଅନ୍ୟ କଲିଗ୍‌ମାନେ ଆଉ କଥା ବଢ଼େଇଲେ ନାହିଁ । ଗଙ୍ଗାରାମ୍ ପିଅନ ଗତବର୍ଷ ଯାଇଥିଲା ତା ପୁଅ ସହିତ ବୈଷ୍ଣୋଦେବୀଙ୍କ ପାଖକୁ, ଜାମ୍ମୁ ପାଖରେ କୋଉଠି ନାଳ ଭିତରେ ବସ୍ ଖସି ପଡ଼ିଥିଲା, ବାପ ପୁଅ ଦୁହେଁ ଆଉ ଫେରିନଥିଲେ । ଅଫିସ୍ ଲୋକେ ଯାଇଥିଲେ ସବୁ ଶ୍ମଶାନକୁ, ତା ପରିବାରକୁ ସାହାଯ୍ୟ ଲାଗି ଚାନ୍ଦା ନିଆଗଲା ବେଳେ ଏଇ ରେଣୁ କହିଥିଲା—''ଦେବୀ କାଳେ ଭାରୀ ପ୍ରତ୍ୟକ୍ଷ । ଏ ଭକ୍ତମାନେ ପୁଣି ଦର୍ଶନକୁ ଯିବା ବାଟରେ ଏ ଦଶା ଭୋଗିଲେ କେମିତି ?''

ଅନ୍ୟତମ ବୟସ୍କ ପିଅନ ବରସୁ ତା'ର ରେଖାଙ୍କିତ ମୁହଁକୁ ଆହୁରି କୁଞ୍ଚେଇ ଉତ୍ତର ଦେଇଥିଲା—''ସବୁ ତାଙ୍କରି ମାୟା । କିଏ କୋଉ କର୍ମର ଫଳ ଭୋଗେ ତମକୁ ଆମକୁ କ'ଣ ଜଣା ?''

ଘରୁ ବାହାରିଲାବେଳେ ମା' ଭାବ ଗଦ୍‌ଗଦ ହେଇପଡ଼ିଥିଲେ, ମୀରାକୁ ଆଶୀର୍ବାଦ କରି କହିଲେ—''ମନ ସ୍ଥିର କରି ଯା' ମା, ଡାକ୍ ଦେବୀଙ୍କୁ । ସେଇ ତୋ ଡାକ ଶୁଣିବେ । ତୋ ମନସ୍କାମନା ପୂରା କରିବେ ତୁ ଦେଖିବୁ ।''

ମୀରାକୁ ଲାଗିଲା ଅପମାନଟିଏ ପ୍ରଚ୍ଛନ୍ନ ଥିଲା କି ସେ ଆଶୀର୍ବାଦରେ । ମା'ଙ୍କ ଆଖିକୁ ନ ଅନେଇ ସେ ବାହାରି ଆସିଥିଲା । ଶେଷ ପର୍ଯ୍ୟନ୍ତ ଗିରୀଶକୁ କିଛୁ କହି ପାରିନି, ଖାଲି ଘରେ କହିଆସିଚି ଫୋନ୍ ଆସିଲେ ଜଣେଇ ଦେବାକୁ । ଗିରୀଶ ପୁଣି ପଚାରିଥାଆନ୍ତା—''ହଠାତ୍ କେମିତି ବୈଷ୍ଣୋଦେବୀ ଯାତ୍ରା ?''

କ'ଣ ଉତ୍ତର ଦେଇଥାନ୍ତା ମୀରା ? ''ଡାକରା ଆସିଚି ଦେବୀଙ୍କଠୁ ।''

ଗିରୀଶ ପଚାରନ୍ତା—''ମୋ ପାଇଁ ଡାକରା ଆସିନି ? ମୁଁ ଯିବି ସାଙ୍ଗରେ ?'' ମୀରା ହଁ କହିପାରନ୍ତାନି, କହିବାକୁ ପଡ଼ନ୍ତା—ତମ ପାଇଁ ବହୁତ ପରିଶ୍ରମ ପଡ଼ିବ, ଚଢ଼ାଣି ରାସ୍ତା, ପୁଣି ଥଣ୍ଡା ।'' ବା ଗିରୀଶ ହୁଏତ ପଚାରନ୍ତା—''ସତରେ ହଠାତ୍

ସେମିତି ଯାଉଚ, ନା କିଛି ଗଭୀର ବିଶ୍ୱାସ ବା ମାଗୁଣି ବା ମାନସିକ ସେମିତି କିଛି ?'' ତାପରେ ମୀରାକୁ କହିବାକୁ ପଡ଼ନ୍ତା—''ମାନସିକ କରିଥିଲି ତମ ପାଇଁ, ତମେ ହସ୍ପିଟାଲରେ ପଡ଼ିଥିଲାବେଳେ, ତମେ ଭଲ ହେଇଗଲେ ଦର୍ଶନ ପାଇଁ ଯିବି ବୋଲି ।'' ଗିରୀଶଙ୍କୁ ଏଥିରେ ସନ୍ତୋଷ ମିଳନ୍ତା, ନା ଓଲଟା ଫଳ ହୁଅନ୍ତା ? ଗିରୀଶ ଧରିନିଅନ୍ତା ଯେ ମୀରା ଆଉ ଗୋଟିଏ ଅସ୍ତ୍ର ପ୍ରୟୋଗ କରୁଚି ତା ଉପରେ, କୃତଜ୍ଞତା ଆଦାୟ କରୁଚି ?

ସୁନୀତା ଭାଉଜ ପାଖରେ ଚାଲିଲେଣି, କହୁଛନ୍ତି—''କେଡ଼େ ପବିତ୍ର ଲାଗୁଚି ନୁହେଁ ? ଏମିତି ସମୟରେ ଲାଗେ ଆମ ଜୀବନଟା କେଡ଼େ ତୁଚ୍ଛ !''

ଝାଞ୍ଜ-ମୃଦଙ୍ଗ-ଭଜନ-କୀର୍ତ୍ତନ ଦଳକୁ ଦଳ ଚାଲିଛନ୍ତି ସାଙ୍ଗରେ । କାହାର ଗୋଟାଏ କ୍ୟାସେଟ୍‌ରୁ ସୁଲଳିତ ମନ୍ତ୍ର ଉଚ୍ଚାରଣ ଶୁଭୁଚି । ପୂରା ଆବହାଓ୍ୱା ଗଦ୍‌ଗଦ ଭକ୍ତି ଭାବମୟ, ନିଜ ଅଜାଣତରେ ଭେଦି ଯାଉଚି ମନ ହୃଦୟର ମଞ୍ଜ ଭିତରକୁ ଟିନି ସିରାପରି । ପାହାଡ଼ ଉପରକୁ ଆସ୍ତେ ଓହ୍ଲେଇ ଆସୁଚି ସନ୍ଧ୍ୟା । ଅଦ୍ଭୁତ ଅବାସ୍ତବ ମନେହେଉଚି ସବୁକିଛି । ବାଟ ଚାଲୁଚାଲୁ ଅଚାନକ ଦୁନିଆ ମନେ ହେଉଚି ପ୍ରେମମୟ, ଆଶୀର୍ବାଦମୟ ।

ଗିରୀଶ ଯଦି ଆସି ପାରିଥାନ୍ତା । ହୁଏତ ଆସିବ କେବେ ସାଙ୍ଗରେ, ଏକାଠି ଆସିବେ ଦିନେ, ଦିହେଁ ଚାଲିବେ ଏ ରାସ୍ତାରେ । ଛାତି ଭିତର ଓଜନିଆ ହେଇ ଆସୁଚି ଏକଥା ଭାବିଲା କ୍ଷଣି ।

ସୁନୀତା ଭାଉଜ ଚେଷ୍ଟାକରି ବି ସାଙ୍ଗରେ ପାଦପକାଇ ପାରୁନାହାନ୍ତି କି ଭକ୍ତିଭାବ ବଜାୟ ରଖିପାରୁ ନାହାନ୍ତି । ଆଗ ପଛ ହେଇ ଧାଉଁଥିବା ପିଲା ଦିହିଙ୍କୁ, ପୁଣି ନିଜ ନାଟି ପୃଥୁଳ ଦେହକୁ ଚଢ଼ାଣି ରାସ୍ତାରେ ସମ୍ଭାଳିବାରେ ସେ ନୟାନ୍ତ ଦେଖାଗଲେଣି ଏବେଠୁଁ । ତାଙ୍କ ପାଇଁ ଧିମେଇ ଯାଇ କେତେବେଳୁ ମୀରା ବି ଏକୁଟିଆ ଚାଲିଚି । ଆଗରୁ ସଂବିତ୍ ଡାକୁଚି—''ମୀରା, ଶୀଘ୍ର ଚାଲ, ଏତେ ଧୀର କ'ଣ ?''

ରେଣୁ ଅର୍ଥମିଶା ମୁହଁରେ କହୁଚି—''ତାକୁ ଏକୁଟିଆ ଚାଲିବାକୁ ଭଲ ଲାଗୁଚି, ଆପଣ ବୁଝିବେନି ।''

ଭଦ୍ରଲୋକ ଏଥିରେ ନୂଆରକମ ଉତ୍ସୁକ ଭାବ ନେଇ ଚାହୁଁଛନ୍ତି ମୀରାକୁ । ଅଟକି ଯାଇ ସାଙ୍ଗରେ ପାଦ ପକାଇ କହୁଛନ୍ତି—''ଆଚ୍ଛା, ତେବେ ଏତେ ଯାତ୍ରୀ ଯେତେବେଳେ ପାଖାପାଖି ଚାଲୁଛନ୍ତି, ଆମକୁ ବି ସାଙ୍ଗରେ ଚାଲିବାକୁ ଦିଅନ୍ତୁ ।''

ବାଟରେ ବସ୍‌ରେ ଆସିଲାବେଳେ ଓ ପାହାଡ଼ ତଳେ ଗେଷ୍ଟ ହାଉସ୍‌ରେ କିଛି ସମୟ ରହିଥିବାବେଳେ ମୀରା ଆଖିରୁ ବାଦ୍ ଯାଇନଥିଲା ଯେ ଛୋଟିଆ ଦଳଟିର

ସଭିଏଁ ଏକ ପ୍ରକାର ସତତ ପ୍ରୟାସ କରୁଚନ୍ତି ରେଣୁ ଓ ସଂବିତ୍‌କୁ ପାଖାପାଖି ରଖିବାକୁ । ବାସ୍ତବରେ ଏ ପୂରା ଦଳଟି ତଥା ତୀର୍ଥଯାତ୍ରାର ଅୟୋଜନ ସବୁ ରେଣୁର ପରିବାରର । ଅଫିସ୍‌ରେ ହଠାତ୍ ସାଙ୍ଗଠୁ ନିମନ୍ତ୍ରଣ ପାଇ ମୀରା ବି ବାହାରି ପଡ଼ିଥିଲା, ହେଲେ ଯାତ୍ରାରମ୍ଭର କିଛି ସମୟ ଭିତରେ ବୁଝିପାରିଥିଲା ଯେ, ଅତି ଭଦ୍ର, ସ୍ନେହଶୀଳ ବ୍ୟବହାର ସତ୍ତ୍ୱେ ଏଠି ସେ ଜଣେ ଅବାଞ୍ଛିତ ଅତିଥି । ଏମିତି କି ରେଣୁର ମା' ତାକୁ ପଚାରି ପକେଇଥିଲେ, ''ତମେ ଏମିତି ହଠାତ୍ ଚାଲିଆସିଲ ଯେ, ଝିଅ ? ଏଇ ଆମ ରେଣୁ ବାଧ କରିଥିବ, ନୁହେଁ ? ଭଲ କଲ ଆସିଲ ।''

ପରିଚୟର ଆଦାନପ୍ରଦାନ ହେଉଣୁ ମୀରା ବୁଝିଥିଲା ଯେ, ସଂବିତ୍ ସବୁମତେ ଯୋଗ୍ୟ ପାତ୍ରଟିଏ ଓ ଉଭୟେ ପରସ୍ପରର ପରିବାର ଦ୍ୱାରା ଅନୁମୋଦିତ । ବର୍ତ୍ତମାନ ରେଣୁ ଓ ସଂବିତ୍‌ର ପରସ୍ପରକୁ ପସନ୍ଦ କରିବାରେ ପାଳି । ବୋଧହୁଏ ଏତକ ଉଦ୍ଦେଶ୍ୟରେ ହିଁ ଏ ଯାତ୍ରାଟିର ଆୟୋଜନ ହେଇଛି । ହୁଏତ ରେଣୁର ମା ବୈଷ୍ଣୋଦେବୀଙ୍କ ପାଖକୁ ଏଇ ମାଗୁଣି ନେଇ ଆସିଥିବେ ।

ଏକାଠି ପାଦ ପକାଉ ପକାଉ ରେଣୁ ଛାଡ଼ିଥିବା କଥାର ଖିଅ ଧରୁଚି । ମୀରା ଠିକ୍ କରିପାରୁନି ତାଙ୍କ କଥାରେ କେତେ ପଣ ସାମିଲ୍ ହେବା ତା ପାଇଁ ସୁନ୍ଦର ହେବ, ଓ ଭାବୁଚି—ଏ ଦିହେଁ ବି ତାହେଲେ କ'ଣ ପ୍ରସ୍ତୁତ ହେଇ ଆସିଛନ୍ତି ପରସ୍ପର ପ୍ରତି ପ୍ରତ୍ୟାଶିତ ପ୍ରତିକ୍ରିୟା ଦେଖାଇବା ଲାଗି ? ରେଣୁ କହୁଚି, ''ମୀରା ମିସ୍ କରୁଚି ଜଣକୁ । ତାଙ୍କର ଆସିବା ନିହାତି ଉଚିତ ଥିଲା, ବୋଧେ ମୋର ହିଁ ତାଙ୍କୁ ନିମନ୍ତ୍ରଣ କରିବାର ଥିଲା ।''

ମୀରା ଉତ୍ତର ଦେଉଚି ସହଜ ଭାବେ, ''ସେ ଆସିପାରି ନଥାନ୍ତେ । ତାଙ୍କ ଗୋଡ଼ର ଫ୍ରାକ୍‌ଚର ଜାଗା ସବୁରେ ଏବେ ବି କଷ୍ଟ ହଉଚି ।'' ଓ ଭାବୁଚି, ରେଣୁ ଏତେ କାହିଁକି କଥା କଥାରେ ଜଣେଇ ଦେବାକୁ ଚାହୁଁଚି ମୀରା ପ୍ରାୟ ବରପୂର୍ବା ବୋଲି ?

ବାର ଚଉଦ ବର୍ଷର ପିଲା ଦିହେଁ ଗୋଟିଏ ୱାକ୍‌ମେନ୍‌ରୁ ଇଅରଫୋନ୍ ଲଗାଇ କି ଗୀତ ଶୁଣୁଛନ୍ତି ପାଳିକରି, ଝିଙ୍କା ଓଟରା ଛଡ଼ାଛଡ଼ି ବି ଲାଗିଛି ।

ଗିରୀଶ ଥରେ ନୂଆ କ୍ୟାସେଟ୍‌ଟିଏ ଆଣିଥିଲା । ମୀରା ତା ଘରେ ପହଞ୍ଚୁ ନବସୁଣୁ ତା ମୁଣ୍ଡରେ ଇଅରଫୋନ୍ ଲଗାଇ ଅନ୍ କରି ଦେଇଥିଲା । ଗିରୀଶର ଟେବୁଲ୍‌ର କାଗଜପତ୍ର ଖେଳେଇବା ଭୁଲି ମୀରା ପୁରୁଣା ଚିହ୍ନା ଗୀତଟିର ସମ୍ମୋହନ ଭିତରକୁ ଟାଣି ହେଇ ଯାଉଥିଲା ବେଳେ ପୁଣି ସେ କାନରୁ ଟାଣିନେଲା ଠପ୍ କିନି । ''ଇଏ କ'ଣ ? ଦିଅ ମତେ, ସୁନ୍ଦର ଜାଗାଟିଏ ଶୁଣୁଥିଲି ଠିକ୍, କ'ଣ କଲ ।''

''ମୋ କଥା ଶୁଣୁନା ଯେ ।''

''କେମିତି ଶୁଣିବି ?''

''କାଇଁକି ଶୁଣିବନି ?''

ଗିରୀଶ ହାତରୁ ଛଡ଼େଇ ଆଣୁ ଆଣୁ ଗୋଟିପଣେ ଟାଣି ହୋଇଯାଏ ମୀରା ତା ଦେହ ଉପରକୁ ।

ଆଖିବୁଜି ଜୋର୍‌କରି ସେ ମନରୁ ଲିଭାଇ ଦେଲା ସେସବୁ । ଥାଉ ଏବେ ନୁହେଁ । ତଥାପି ସେ ଆଶ୍ଚର୍ଯ୍ୟ ହେଉଚି ଯେ ଏଇକ୍ଷଣି ସବୁ ଏତେ ପରିଷ୍କାର ଭାବେ ମନେପଡୁଚି । ସତେ ଯେମିତି ପାହାଡ଼ ଉପରୁ ଦେଖୁଚି ସେ ଦୃଶ୍ୟ—ପ୍ରାଞ୍ଜଳ ଓ ଦୂର ।

ସଂବିତ୍ ପଚାରୁଚି ମୀରାଙ୍କୁ, ''ଆଚ୍ଛା କହନ୍ତୁ ତ, ଖାଲି ଗୋଟାଏ ଚେଞ୍ଜ ଲାଗି ଆପଣ ଚାଲିଆସିଲେ ନା ବାସ୍ତବରେ ଧାର୍ମିକ ଉତ୍ସାହ ବି ଅଛି କିଛି ?''

ମୀରା ସେମିତି ତାଙ୍କ ହସ ଫେରେଇ ଦେଇ କହୁଚି, ''ଆପଣ ନିଜ କଥା କହୁନାହାନ୍ତି ?''

ରେଣୁ କହୁଚି—''ସାବଧାନ । ଦେବୀ ସମସ୍ତଙ୍କ ମନକଥା ଜାଣିପାରୁଚନ୍ତି ।'' ସଂବିତ୍ ଚଟ୍‌କିନି ଉତ୍ତର ଦେଉଚି—''ଆମେ ବି ଜାଣୁଚୁ ଟିକେ ଟିକେ ।''

ରେଣୁର ହସ ଅନ୍ୟ ଦୁହିଁଙ୍କ ତୁଳନାରେ କମ୍ ପଡ଼ିଯାଉଚି, ସେ ଚଟ୍‌ପଟ୍ ନିଜ ଦି' ପାଖ ମୁହଁ ଦିହିଙ୍କୁ ଚାହିଁଦେଇ ପଚାରୁଚି, ''କ'ଣ ସେଟା ଶୁଣେ ? ଟେଲିପାଥି ଚାଲିଚି ନା କ'ଣ ?''

ପଛରୁ କୀର୍ତ୍ତନ ଦଳଟିଏ ଆଗେଇ ଆସୁଚନ୍ତି । ମୀରା କଥା ବାଁରେଇ ଗୁଣୁଗୁଣାଉଚି ତାଙ୍କ ସ୍ୱର । ଅନ୍ଧାର ଛାଇ ଆସୁଚି । ପାହାଡ଼ ରାସ୍ତାରେ ବତି ଧାଡ଼ି ଧାଡ଼ି ଜଳି ଉଠୁଛି । ଗୀତ ବାଜା ସହିତ ସମବେତ ଜୟଜୟକାର ଉଠୁଚି ଦେବୀଙ୍କର । କାନ ଅତଡ଼ା ପଡୁଛି । ଏଇ ହିଁ ଏକମାତ୍ର ଉପାୟ । ଅନ୍ୟ କଥା, ଅନ୍ୟ ଚିନ୍ତା ମୁଣ୍ଡରେ ପଶିବାର ଜୁ' ନାହିଁ । ସ୍ୱର ମିଶେଇଦେଇ ପ୍ରତ୍ୟେକେ ଡାକୁଛନ୍ତି ଦେବୀଙ୍କୁ ଯେଝା ମାଗୁଣି, ମାନସିକ ନେଇ । ମୀରା ଆଖି ବୁଜି ଦେଇ ଏକାଗ୍ର ହେଉଛି, କ୍ଷଣକେ ଦିଶିଯାଉଛି ତାକୁ ସେ ଭୟାବହ ରୂପ, ହସ୍‌ପିଟାଲ ବେଡ୍‌ରେ ବ୍ୟାଣ୍ଡେଜ୍ ପ୍ଲାଷ୍ଟରମୟ ନିସ୍ତେଜ ଗିରୀଶ । ଦୃଶ୍ୟକୁ ମନରୁ ଠେଲିଦେଇ ସ୍ତୁତିଗାନ କରୁଚି ସେ କୃତଜ୍ଞତାରେ । ଆଉରି କାକୁତିରେ ଆପେ ଆପେ ଯୋଡ଼ିହେଇ ଯାଉଚି ମାଗୁଣିଟିଏ । ପୁଣି ଚିହ୍ନା ଗୋଟିଏ ଭୟ, ଚିନ୍ତାରେ କାତର ହେଇପଡୁଛି ମନ, ନାହିଁନଥିବା କ୍ଷୋଭ ଅଭିଯୋଗ ଉଠେଇ ଆଣୁଚି ଛାତି ଭିତରେ କୁଆଡୁ ମେଘଭଳି ।

ଭକ୍ତ ଦଳ ଗାଇ ଗାଇ ଟପିଗଲେଣି ଖଣ୍ଡେବାଟ । ଟିକିଏ ଖାଲି ଖାଲି ପୁଣି ହେଇଗଲା ଆଖପାଖ । କାଇଁ, ମନରେ ଶାନ୍ତି ଆଶ୍ୱାସନା, ବିଶ୍ୱାସ, ଶକ୍ତି ସବୁ ପରା ଓହ୍ଲେଇ ଆସିବାର ଥିଲା ଏଠି ଆପଣାଛାଏଁ ?

ବିଚିତ୍ର ମର୍ମଛୁଆଁ ଦୃଶ୍ୟଟିଏ । ଫୁଟିଲା ଫୁଲପରି ମୁହଁର ଝିଅଟିଏ ଚାଲିଚି । ଚାଲୁନାଇଁ, ପୋଲିଓ ରୋଗରେ ଶୁଖିଯାଇଥିବା ନିର୍ଜୀବ ଗୋଡ଼ ଦୁଇଟିକୁ ଭୂଇଁ ଉପରେ ହାତ ପାପୁଲି ବଳରେ ଘୋଷାରି ଆଗଉଚି କୌଣସି ପ୍ରକାରେ । ସାଙ୍ଗରେ ଧୀରେ ଧୀରେ ଚାଲିଛନ୍ତି ପରିବାରଜନ, ମା ତା'ର ଓଢ଼ଣି ସଜାଡ଼ି ଦେଉଚି, କପାଳରୁ ଝାଳ ପୋଛି ଦେଉଚି । ଉଜ୍ଜ୍ୱଳ ମୁହଁରେ ଝିଅଟି ଜୟକାରରେ ପାଳିଆ ଧରୁଚି । କି ଦୁର୍ବାର ଆଶା ନେଇ ଦେବୀ ଦର୍ଶନକୁ ଯାଉଚି ଝିଅଟି, ଆଉ ତା ପରିବାର ? ଦେବୀଙ୍କ ମହିମାରେ ଫେରିବା ରାସ୍ତାତକ ସୁସ୍ଥ ଗୋଡ଼ରେ ଡେଇଁ ଡେଇଁ ଚାଲିଆସିବ ବୋଲି ?

ମୀରା ମୁହଁ ଫେରେଇ ନେଇ ପ୍ରଶ୍ନ ସବୁକୁ ପୋଛିଦେଲା । ଆଗରେ ଚା ଦୋକାନ ପାଖରେ ଯାତ୍ରୀଙ୍କ ଭିଡ଼ । ପିଲା ଦିହେଁ ଆଗତୁରା ଯାଇ ଘୋଷଣା କରୁଚନ୍ତି, ''ମା ଏଠି କଚୋଡ଼ି ବି ମିଳୁଚି । ମିଠେଇ ବି ।''

''କୋଲଡ୍ ଡ୍ରିଙ୍କ୍ ବି । ଆଇସକ୍ରିମ୍—''

''କିରେ, ତମେ ସବୁ ଦେବୀ ଦର୍ଶନକୁ ଆସିଚ ନା ପିକ୍‌ନିକ୍‌କୁ ?''

ରାସ୍ତାକଡ଼ ପଥର ଉପରେ ତରୁଣ ଦମ୍ପତିଟିଏ ବସି ଚା ଖାଉଖାଉ ଚୁପ୍‌ଚୁପ୍ କଥାବାର୍ତ୍ତା କରୁଛନ୍ତି । ରେଣୁ କହୁଛି, ''ଏ ଦିହେଁ ତ ହନିମୁନ୍‌ରେ ଆସିଲା ପରି ମନେ ହେଉଛନ୍ତି ।''

ମୀରା ଆଖିଠାରି କହୁଚି, ''ତୋରି ପରି ହେଇଥିବେ ।''

''ଧୁତ୍ ! ତତେ ମୁଁ କହୁଚି ଆମ ଭିତରେ ସେମିତି କିଛି ନାଇଁ ।''

''ନାଇଁ ଯେ, ହେଇଯିବ ଏଇଠି, କେତେବେଳ ?''

''ଏଇଠି ? ଏଠି ତ ଘୋର ନାସ୍ତିକ ବି ଡରିବ । ତା ଉପରେ ସାଙ୍ଗରେ ଘରବାଲାଙ୍କ ପଲଟଣ ।''

ଚା' ପିଉ ପିଉ ରେଣୁ ପୁଣି ମୀରାର କାନପାଖେ କହିଲା—''ଆଉ କଥା କ'ଣ ଜାଣୁ, ମୋର ମନେହେଉଛି ତୋ ଉପରେ ହିଁ ଭଦ୍ରଲୋକ ନଜର ପକେଇଲେଣି ।''

''ତୁ ତ ମଝି ମଝିରେ ତିଆରି ଦେଉଚୁ ମୋର ଜଣେ କିଏ ଅଛି ବୋଲି, ଆଉ ଡର କ'ଣ ? ଟିକିଏ ନଜରରେ କ'ଣ ଯାଏଆସେ ?''

ରେଣୁ ଟିକିଏ ଗମ୍ଭୀର ହେଇ ଚା' ପିଇଲା, ଦୀର୍ଘଶ୍ୱାସଟାଏ ଛାଡ଼ି କହିଲା—"ତାଙ୍କର ବି ତେଣେ କେହି ନଥିବେ ବୋଲି କିଛି ଠିକଣା ଅଛି ?"

ମୀରା ହସିଲା, "କି ଠିକଣା ଥାଏ ଭଲା କାହାର ?"

ଆଗରୁ ହେଉ ବା ପଛରେ, କି ଠିକଣା ଭଲା କାହାର ଥାଏ ? ତାକୁ ଭେଟିବା ଆଗରୁ ବି ଗିରୀଶ ଜୀବନରେ ସୁଜାତା ଥିଲା କେବେ। ସେଥିରେ କିଛି ଫରକ୍ ପଡ଼ିଥିଲା କି ସେ ଦିନମାନଙ୍କରେ ?

ଚା' ସାରି ଉଠିଲା ବେଳେ ସଂବିତ୍ କହୁଚି ମୀରାକୁ—"ଆପଣ ବୋଧେ ଗୀତ ଗାଆନ୍ତି ନା କ'ଣ। ଗାଆନ୍ତୁ ଦେଖି କିଛି ଗୋଟାଏ।"

"ଏତେ ଗୀତ ଶୁଭୁଚି ଚାରିଆଡୁ, ଆଉରି ପାଟି ଦରକାର ?"

ଭାଉଜ କହୁଛନ୍ତି, "ଚାଲୁନ ସମସ୍ତେ ମିଶି ଗୋଟାଏ ଭଜନ ଧରିବା—ବୈଷ୍ଣବ ଜନ ତୋ ..."

ପିଲା ଦିହେଁ ହୋ ହୋ ହସୁଚନ୍ତି, ବଡ଼ମାନେ ଜଣେଅଧେ ପାକି ଧରୁ ଧରୁ ଅଳ୍ପ ହସୁଛନ୍ତି। ସୁନୀତା ଭାଉଜ ଜିଦିରେ ଆଉରି ଜୋର୍‌ରେ ଗାଉଚନ୍ତି। ପିଲାଏ ବି ଏଥର ସ୍ୱର ମିଶାଉଛନ୍ତି। ଭାଉଜ ଧଇଁସଇଁ ହେଇପଡୁଛନ୍ତି। ଆଉ ପଦ ମନେ ପଡୁନାହିଁ କାହାରି, ଗୀତ ମିଳେଇ ଯାଉଚି କ୍ରମେ।

ଅନ୍ଧାର ଗାଢ଼ ହେଇ ଆସୁଚି। ଚଢ଼ାଣି ରାସ୍ତାଟି ବତୀ ଆଲୁଅରେ କ୍ରମେ ଉଠିଯାଇଚି ରାତିର ଆକାଶ ଆଡ଼କୁ। ପାଟିଗୋଳ ମାନ୍ଦା ପଡ଼ିଆସୁଚି। ବୟସ୍କମାନଙ୍କ ସବାରି ଆଗରେ ଚାଲିଗଲାଣି। ରେଣୁର ବଡ଼ଭାଇ ରାସ୍ତା କଡ଼ରେ ସବାରି ବୁଝୁଚନ୍ତି, ଆଉ ଚାଲିବା ହେଉନାହିଁ।

ଏଥରକ ଚାଲିବା ଦଳରେ କେବଳ ମୀରା, ରେଣୁ, ସଂବିତ୍ ଓ ଟୋକା ଦିହେଁ। ଦିହିଁଙ୍କ ମାଙ୍କଡ଼ାମି କମିଆସିଲାଣି, ୱାକମେନ୍‌ରୁ ବ୍ୟାଟେରୀ ସରି କାନ୍ଧ ବ୍ୟାଗ୍‌ରେ ପଶିଲାଣି। ମୀରା ଜାଣିଶୁଣି ପିଲା ଦିହିଁଙ୍କ ସାଙ୍ଗେ ଚାଲିଚି, ବଡ଼ଟି ତାକୁ ଶୁଣାଉଚି ତାଙ୍କ ଏନ୍.ସି.ସି. କ୍ୟାମ୍ପର କୋଉ ଘଟଣା। ପ୍ରତିଟି କଥା ତଥାପି ମନକୁ ବାଟ କଢ଼ାଇ ନେଉଚି ଛାଡ଼ି ଆସିଥିବା ଜୀବନକୁ। ହଠାତ୍ ମୀରା ପଚାରିବସୁଚି ନିଜକୁ—ସୁଜାତା କଥାଟା ଗିରୀଶ ମୁହଁରୁ ଶୁଣି ବି ସେ ବେଶୀ ଧ୍ୟାନ ଦେଇ ନଥିଲା କାହିଁକି ? ସୁଜାତା ଗିରୀଶର ପ୍ରେମିକା ଥିଲା କେବେ, କାହିଁ କେବେ ଗିରୀଶ ପାଠ ପଢୁଥିଲା ବେଳେ। ପଡ଼ିଶା ଘର ଝିଅ ଥିଲା ସେ। ଦିହିଁଙ୍କ ପରିବାରରେ ବାହାଘର କଥା ବି ପଡ଼ି ସାରିଥିଲା, ବୋଧେ ଠିକ୍ ହେଇ ସାରିଥିଲା କି କ'ଣ। କାହିଁକି ମୀରା ବିଶେଷ ଧ୍ୟାନ

ଦେଇ ନଥିଲା ସେତେବେଳେ ଗିରୀଶର କଥାକୁ ? ସମୟ, ସ୍ଥାନ ସବୁ ଜଳଜଳ ଦିଶିଯାଉଚି ମୀରାକୁ ଏବେ । ଗିରୀଶର ଛୋଟ ଦି' ବଖୁରିଆ ଫ୍ଲାଟ୍ । ମୀରା କାନ୍ଥ ଦର୍ପଣ ଆଗରେ ତରତରରେ ମୁଣ୍ଡ ବାଳରେ କ୍ଲିପ୍ ଲଗାଉଥିଲା । ଗିରୀଶ ଅଚାନକ କହିଲା—''ସୁଜାତା କଥାଟା ମୁଁ ପୂରା କହିଦିଏଁ ତମକୁ, ନ ହେଲେ ପରେ କହିବ ଲୁଚାଇଲି ବୋଲି ।'' ମୀରା ପର୍ସରୁ ଲିପ୍‌ଷ୍ଟିକ୍ କାଢ଼ି ଲଗାଇଲା, କହିଲା—''ହଉ ହେଲା, ଆଜି ସମୟ ନାହିଁ, ଆଉ ଦିନେ କହିବ ।'' ଗିରୀଶ ମାନି ନଥିଲା, ତାକୁ କାଳେ ମାଡ଼ିପଡୁଥିଲା କଥାଟା । ଶୁଣିବା ପରେ ଠିକ୍ କ'ଣ ଲାଗିଥିଲା ମୀରାକୁ, ଏବେ ଆଉ ପରିଷ୍କାର ମନେପଡୁନି । ଖାଲି ସେତେବେଳେ ଛାଇଥିବା ଆଚ୍ଛନ୍ନ ଅବସ୍ଥାଟା ମନେପଡୁଛି । ଶୀଘ୍ର ଘରକୁ ଫେରିବାର ଥିଲା, କିଛି ହେଇନଥିଲା ଭଳି ଘର ଲୋକଙ୍କୁ ସାମ୍ନା କରିବାକୁ ଥିଲା, ସେକଥା ମନେଅଛି ।

ଆଉରି ମନେପଡୁଛି ସେ ପରେ କେତେଥର ଥଟ୍ଟା କରୁଥିଲା ଗିରୀଶକୁ ''ଆଜିକାଲି ଚିଠିପତ୍ର ଦିଆନିଆ ଅଛି ନା ନାହିଁ ?''

ମୁଣ୍ଡ ହଲାଇ ସ୍ପଷ୍ଟ ମନା କରେ ଗିରୀଶ, ''ଖାଲି ନୂଆ ବର୍ଷର କାର୍ଡ଼ ଯାହା ।''

କେବେ କେବେ ମୀରା ପଚାରିଚି, ''ଇସ୍, ଏତେ ପ୍ରେମ କେମିତି ତମର ପୁଣି ଉଭେଇଯାଇ ପାରିଲା ମ ।''

ସିଧା ମୁହଁକୁ ଅନେଇ ଗିରୀଶ ଉତ୍ତର ଦିଏ, ''ଜାଣିନି । ଏବେ ପଛକୁ ଫେରି ଚାହିଁଲେ ଲାଗେ ଖାଲି ବୋଧେ କେମିତି ଗୋଟାଏ ମୋହ ଥିଲା । ଆମେ ଦିହେଁ ପରସ୍ପରକୁ ଭଲକରି ଜାଣି ବି ନଥିଲୁ, ବେଶୀ ସମୟ କଥାବାର୍ତ୍ତା ବି କୋଉଠି ହେଉଥିଲା । ଖାଲି ପାଖାପାଖି ହେବା କଥା, ସାନ୍ନିଧ ଖୋଜିବା କଥା ଅନ୍ଧ ପରି ।''

ମୀରା ସେ ମୁହଁରେ ଦୋଷୀ ଭାବ, କିଛି ଗୋଟାଏ ଦୁଃଖ ପଢ଼ିବାକୁ ଚେଷ୍ଟା ବି କରିଥିବାର ମନେ ପଡୁଛି । ପାଇ ନଥିଲା ଆଦୌ । ସୁଜାତା କଥା ସେ ପଚାରୁଥିଲା, ସନ୍ଦେହରେ ନୁହେଁ, ଗିରୀଶର ମନ ଭିତରୁ ସବୁ ଗୋପନ କଥା ନିଜ ଆଗରେ କୁହାଇବାର ସନ୍ତୋଷରେ । ତାକୁ ଗୋଟିପଣେ ଜାଣିବାର, ପାଇବାର ଇଚ୍ଛାରେ । ଗିରୀଶ କହେ, ''ପ୍ରକୃତରେ ସେତେବେଳେ ମୁଁ ବାହାଘର କଥା ଜମାରୁ ଭାବୁ ନଥିଲି । ହେଲେ ଥରେ ଦିହେଁ ଧରା ପଡ଼ିଗଲୁ ତା ମା'ଙ୍କ ହାତରେ । ଦିହିଁଙ୍କର ପୁରୁଣାକାଳିଆ ପରିବାର, ଜାତିଫାତିରେ କିଛି ଅସୁବିଧା ନଥିଲା । କଥା ଠିକ୍ ହେଲା ମୁଁ ପାଠ ସାରି ଚାକିରି ପାଇଲାକ୍ଷଣି ଆମର ବାହାଘର ହେବ । ଆଉ ଆଦେଶ ହେଲା ତା ପୂର୍ବରୁ ଆମର ଆଉ ମିଳାମିଶା ନହେବା ଦରକାର ।''

''ତମେ ତ ସୁନାପିଲା ପରି ମାନି ପକେଇଥିବ ।''

''କିଏ କହୁଚି ମାନିଥିଲି ବୋଲି ? ଖାଲି ସୁବିଧା କମ୍ ଥିଲା ।''

ନିଜ ନିଜ ଜୀବନର ପ୍ରତିଟି ବ୍ୟକ୍ତିଗତ କଥା, ଆଉ କାହା ଆଗରେ କେବେ କୁହାଯାଇ ନଥିବା କଥାମାନ କହିଦେବା ମାତ୍ରେ ଦୁହେଁ ଆସ୍ଥା ଓ ଅନ୍ତରଙ୍ଗତାରେ ଆଉରି ପାଦେ ଆଗେଇଗଲା ଭଳି ଲାଗୁଥିଲା ସେ ଦିନମାନଙ୍କରେ ।

ସେ ଦିନମାନ କେବେକାର କଥା ହେଲାଣି, କ୍ରମାଗତ ଦିନ ଦିନ ପ୍ରତି ଘଣ୍ଟା ମୁହୂର୍ତ୍ତ ଆବିଷ୍ଟ ରହିବାର ସେ ସମୟ ? ଅଫିସ୍‌ରେ ଫୋନ୍ ଆସେ । ଚାରିଜଣିଆ କୋଠରିଟିରେ ଗୋଟିଏ ଫୋନ୍ । ତାକୁ ଡକାଯାଏ ଥରକୁଥର, ''ମୀରା, ଫୋନ୍ ।'' ଅନ୍ୟମାନେ ଟେବୁଲ ଉପରୁ ଆଖି ଉଠେଇ ଚାହାଁନ୍ତି । ସେମାନଙ୍କୁ ପଛକଲା ପରି ଠିଆ ହେଇ ଏଣୁତେଣୁ ଦି'ଟା ବାଢେ କଥା ଗପେ ସେ, କହେ ''ହଉ ତେବେ, ଦେଖାହେବ ।'' ଅଧ ଘଣ୍ଟା ପରେ ପୁଣି ଫୋନ୍ ବାଜେ । ହସ ହୁଏ ।

ଅଫିସ୍‌କୁ ବାହାରିବାବେଳେ ଗିରୀଶ ଅପେକ୍ଷା କରିଥାଏ । ପାର୍କ୍, କଫିହାଉସ୍ । ତଥାପି ସମୟ ଅଣ୍ଟେ ନାହିଁ । ନିଜ ଘରୁ ଖଣ୍ଡେଦୂର ମୋଡ଼ଠି ମଟରସାଇକଲ୍‌ରୁ ଓହ୍ଲେଇ ମୀରା କହେ, ''ଶୁଣ, ତମେ ଏତେଥର ଫୋନ୍ କରନି । ସମସ୍ତେ ହସୁଚନ୍ତି । ମୁଁ ନିଜେ ଏଥର ଫୋନ୍ କରିବି ତମକୁ, ଥରଟିଏ, ତିନି ମିନିଟ୍ ପାଇଁ, ବାସ୍ ।''

''ସେଥିରେ କେମିତି ଚଳିବ ? ଦି ଚାରିଟା ଜରୁରୀ କଥା କହୁ କହୁ ତ ପାଞ୍ଚ ଦଶମିନିଟ୍ ଲାଗିଯିବ ।''

''ଜାଣିଚି । ସେଇ ସେଇ ଜରୁରୀ କଥା ତ ପ୍ରତିଦିନ କହିବାକୁ ହୁଏ ।''

''କହିବାକୁ ତ ହୁଏ, କ'ଣ କରାଯିବ ?''

''ମୁଁ ଗୋଟେ କଥା ଭାବିଚି । ଚାଲ ନମ୍ବର ଦେଇଦେବା, କୋଡ୍ ନମ୍ବର ପ୍ରତି ଜରୁରୀ କଥାର ।''

''ଯଥା ?''

''ପ୍ରତି ବାକ୍ୟ ଲାଗି କୋଡ୍, ଏ.ବି.ସି.ଡ଼ି. ।''

ଗିରୀଶ ହଠାତ୍ ଅର୍ଥ ଉପଲବ୍ଧି କରି ନାଟକୀୟ ଭଙ୍ଗୀରେ ଶୁଷୁରି ମାରେ, ''ବୁଝିଗଲି । 'ଏ' କହିଲେ—ତମେ ଦେଖିବାକୁ ଭଲ । ବି—ତମକୁ ମୁଁ ଭଲପାଏ ।'' ''ସି—ତମେ ଗୋଟାଏ ଠକ ।''

''ହଉ । ଡି ରେ ଗୋଟିଏ ପ୍ରଶ୍ନ ଚିହ୍ନ ଥିବ । ଡି—କେବେ ଆମର ଦେଖା ହେଉଚି ?''

ରାତିରେ ଘରକୁ ଫୋନ୍ ଆସେ । ବାପା, ମା ପାଖରେ ବସି ଟି.ଭି. ଦେଖୁଥାନ୍ତି । ମୀରା ବିରକ୍ତ ମୁଖମୁଦ୍ରାକରି ସାନଭାଇ ହାତରୁ ଫୋନ୍ ନିଏ, କହେ- ''ଆପଣ କାଲି ଅଫିସରେ ପଚାରିବେ, ମୁଁ ବୁଝି କହିବି ।''

ଗିରୀଶର ସ୍ୱର ଶୁଭେ- ''ଏ. ବି. ।''

ମୀରା ଲୁଚେଇ ଅନ୍ୟମାନଙ୍କୁ ଥରେ ଦେଖିନିଏ, କହେ ''ଠିକ୍ ଅଛି । ସି ପଏଣ୍ଟ ଟା ଦେଖିନେବେ ।''

ଗିରିଶ କହେ, ''ଶୁଣ ଫୋନ ରଖନି । ଆଉ ଗୋଟିଏ ଅଛି ଇ—ମାନେ ଇଛା ହେଉଚି ଏଇକ୍ଷଣି ପାଖକୁ ଆସ ।''

ପାଗଳାମିର ଦିନ ସେସବୁ । ଭାବିଲେ ଅବିଶ୍ୱାସ ଲାଗୁଚି ଏବେ । ଅଫିସ୍‌ରୁ ହାଫ୍‌ଡେ ନେଇନିଏ ସେ । ''ରେଣୁ, ଘରୁ ଫୋନ୍ ଆସିଲେ କହିବୁ ମୁଁ ଅଫିସ୍ କାମରେ ବାହାରକୁ ଯାଇଚି ।''

''ଏତେ ସବୁ ଗୋଳମାଳରେ କାହିଁକି ପଶୁଚୁ କହିଲୁ ? ବାହା ହେଇପଡ଼ । ସେ କ'ଣ କହୁଚି ? ଘରେ କ'ଣ କହୁଚନ୍ତି ?''

ଦିହିଁଙ୍କ ଘରଆଡୁ ଆପତ୍ତି, ଜାତି, ଭାଷା କେତେ ଅଡୁଆ । ବିଭିନ୍ନ ପର୍ଯ୍ୟାୟରେ ବାଧାବିଘ୍ନ ସବୁର ସାମ୍ନା କରାଗଲା । ଶେଷରେ ସାହସିକ ପଦକ୍ଷେପଟି ନିଆଗଲା, ରେଜିଷ୍ଟ୍ରି ବିବାହର ଆୟୋଜନ । ଗିରୀଶ ଆଶ୍ୱାସନା ଦେଇଥିଲା, ତା ପରିବାର ତରଫରୁ ଯାହା କିଛି ଆପତ୍ତି, ନିରାଶା ରହିଯାଇଛି, ବାହାଘରଟା ହେଇଗଲେ ବଳେ ମିଳେଇ ଯିବ ।

ଘରେ, ଅଫିସ୍‌ରେ ଏଥର ଖୋଲାଖୋଲି ଫୋନ୍ ଆସେ, ଗିରୀଶ ବିଷୟରେ ଥଟ୍ଟା ତାମସା ହୁଏ । କଲିଗ୍ ଜଣେ କହେ, ''ଆମକୁ ଫୋନ୍ ଆଟେଣ୍ଡାଣ୍ଟ ଭାବେ ଗୋଟେ ସ୍ପେଶାଲ୍ ଭୋଜି ମିଳୁ । ଏଥର ଏ ଡ୍ୟୁଟି ଆମର ସରିବ କିନା ।''

''କିଏ କହିଲା ସରିଯିବ ଏଡ଼େ ଶୀଘ୍ର ? ପ୍ରଥମେ ବର୍ଷେ ଛମାସ ତ ଆଉରି ବଢ଼ିବ । ମାଥୁର୍ ଭୈୟା, ଫୋନ୍ ବାଜି ଚାଲିବ ନିରନ୍ତର, ତମେ ଦେଖୁଥା—''

ସେଦିନ ଆସିନାଇଁ ଏଯାକେ । ଜମାଟବନ୍ଧା କୋହଟାଏ ଅତର୍କିତ ଉଠି ଅଣନିଶ୍ୱାସୀ କରିଦେଉଚି ।

''ଆରେ ଆରେ ମୀରା, ଝୁଣ୍ଟି ପଡ଼ିଲ ନା କ'ଣ ?''

''ନା ତ । ଜୋତା ଫିତାଟା ।''

''ଥକି ପଡ଼ିଲଣି ତମେ ।'' ସଂବିତ୍ ପାଖକୁ ଆସି ହାତ ବଢ଼ାଉଚି, ମୀରାର ହାତ ଟାଣି ଉଠାଉଚି, କହୁଚି, ''ଚାଲ ଟିକେ ବସିପଡ଼ିବା, ବହୁତ ବାଟ ଚାଲିଲେଣି ।''

ରେଣୁ କିଛି ମନେକଲା କି ? ମନ ଭିତରେ ଗିରୀଶ କିଛି ଭାବିଲା କି ?

ରାସ୍ତାକଡ଼ ବେଞ୍ଚରେ ବସି ପିଲା ଦିହେଁ କହୁଛନ୍ତି, ''ଅଙ୍କଲ୍, ଏଥର ମୀରା ଆଣ୍ଟିଙ୍କ ହାତ ଦେଖନ୍ତୁ ।''

''ଆପଣ ପାମିଷ୍ଟ୍ରି ଜାଣନ୍ତି ?''

ଆଖି ମିଟିକାଇ ସଂବିତ୍ କହୁଚି, ''ରେଣୁର ହାତ ଦେଖୁ ଦେଖୁ ଏ ଟୋକା ଦିହିଁଙ୍କ ହାବୁଡ଼ରେ ପଡ଼ିଗଲି ।''

''ମୁଁ ପାଇଲଟ୍ ହେବି । ଆଉ ଇଏ ପପ୍ ଷ୍ଟାର୍ ।''

''ମୁଁ ସେଇଆ କହିଲି ? ପରିଶ୍ରମ କଲେ ହେବ କହିଲି ନା ।''

''ଏତିକି କହିବା ଲାଗି ପାମିଷ୍ଟ୍ରି ଜାଣିଥିବା ଦରକାର ?''

ନୂଆ ଫୂର୍ତ୍ତିରେ ପୁଣି ବାଟ ଚଲା । ରାତି ଗହୀର ହେଲାବେଳକୁ ସବୁ କେମିତି ଅତିବାସ୍ତବ ଲାଗୁଚି । ଅତି ନିକଟରେ ଜୀବନକୁ ଜଡ଼େଇ ଧରିଥିବା ସମସ୍ୟା, ମୀରାକୁ ଲାଗୁଚି କିଛି ସମୟ ହୁଗୁଳି ଯିବାକୁ ସମୟ ପାଇଚି । ସେ କହୁଚି ନିଜକୁ, ତେବେ ଏଥର ନିକଟ ଅତୀତରୁ ମୁଖ୍ୟ ଦୃଶ୍ୟମାନ ଉଠେଇ ଆଣି ସଜେଇ ଦିଆଯାଉ ଗୋଟିକ ପରେ ଗୋଟିଏ । ତା'ପରେ ସଦ୍ୟ ଛାଡ଼ି ଆସିଥିବା ପରିସ୍ଥିତିକୁ ନୂଆ ଆଖିରେ ଦେଖିହେବ ହୁଏତ ।

ଅତି ନାଟକୀୟ ସିନେମା ଭଳି ଗିରୀଶର ମଟରସାଇକେଲ ଦୁର୍ଘଟଣା । ଚିନ୍ତା, ଉଦ୍‌ବେଗ, ପ୍ରାର୍ଥନା, ପୁଣି ବିପତ୍ତି ଟଳିଯାଇଥିବାର ଆଶ୍ୱାସନା । ହସ୍‌ପିଟାଲ୍ ବେଡ୍‌ରେ ବାପ, ମା, ଭଉଣୀଙ୍କ ସ୍ନେହ ଆଦରରେ ନିରାପଦ ଶିଶୁଟିଏ ଭଳି ଦିଶୁଥିବା ଗିରୀଶର ନୂଆ ମୁହଁ । ହାତରେ ବ୍ୟାଗ୍, ଫ୍ଲାସ୍କ ନେଇ ସେ ବ୍ୟୂହ ଭିତରକୁ ପାଦ ବଢ଼ାଇଲା ବେଳକୁ ମୀରାକୁ ପ୍ରତିଦିନ କେମିତି ଏକପ୍ରକାର ଦମ୍ଭ ଦେବାକୁ ହୁଏ ନିଜକୁ । ତାପରେ ଦିନେ ଗିରୀଶର ବେଡ୍‌ରୁ ଟିକିଏ ଛାଡ଼ି ଷ୍ଟୁଲ୍‌ରେ ବସିଥିଲା ଝିଅଟି, ଗିରୀଶ ପରିଚୟ କରାଇ ଦେବା ପୂର୍ବରୁ ମୀରା ଚିହ୍ନି ଯାଇଥିଲା—ସୁଜାତା । କଥାବାର୍ତ୍ତା କରୁ କରୁ ମୀରା ବୁଝିଥିଲା, ଗିରୀଶର ବର୍ଣ୍ଣନାରୁ ଜାଣିଥିବା ଡର ଡର କଲେଜ ଝିଅ ଇଏ ନୁହେଁ ଆଉ । ସହଜ ସ୍ୱରରେ ଆତ୍ମବିଶ୍ୱାସ, କଥାରେ ଅକପଟ ଉଦ୍‌ବେଗ ଗିରୀଶ ଲାଗି । ''ମଉସା, ମାଉସୀ ଆମ ନିଜ ପରିବାର ଲୋକ ଭଳି । ଭାବିଲି ତାଙ୍କ ପାଖେ ମୋର ଠିଆହେବା ଉଚିତ ।''

ପରବର୍ତ୍ତୀ ଦୃଶ୍ୟ ଗିରୀଶର ଫ୍ଲାଟ୍। ଏଥର ସଜଡ଼ାସଜଡ଼ି ହେଇ ଘରଟିଏ ଭଳି ଦିଶୁଥାଏ। କବାଟ ଖୋଲନ୍ତି ଗିରୀଶର ମା, "ଆସ ଝିଅ ଆସ। ତମରି କଥା ପଡ଼ିଥିଲା କାଲି। କେତେ ସାହାଯ୍ୟ କଲ ତମେ, ତା'ର ଅନ୍ୟ ସାଙ୍ଗମାନେ ବି।"

ମୀରା ଆରମ୍ଭ କରେ, "ଆସି ପାରିନଥିଲି କେତେ ଦିନ ..."

କଥା ପୂରା କରିବା ଦରକାର ପଡ଼େନି, ସେ ଉଠନ୍ତି, "ଯାଏ, କଫି କରି ଆଣେ।"

ଭିତରୁ ହସହସ ମୁହଁରେ ବାହାରି ଆସେ ସୁଜାତା, କହେ "ହେଲୋ।" ତା'ପରେ ପୁଣି ଫେରିପଡ଼େ ଦୃପ୍ତ ଭଙ୍ଗୀରେ, "ଆପଣ ବସନ୍ତୁ ମାଉସୀ। ମୁଁ କଫି ନେଇ ଆସୁଚି।"

ମାଉସୀ ସ୍ନେହରେ ତା ଗଲାବାଟକୁ ଅନେଇ କହନ୍ତି, "ଫେରିଯିବାକୁ ବସିଥିଲା ଛୁଟି ନାହିଁ କହି, ଜୋର୍ କରି ରଖିନେଲି।" ଭିତର କୋଠରିରେ ଗିରୀଶ ଶୋଇଥାଏ। ତା ମା ପୁଣିଥରେ ବଖାଣି ବସନ୍ତି ଟଳିଯାଇଥିବା ବିପତ୍ତିର ପୂର୍ବାପର ବିବରଣୀ ସବୁ। ତାଙ୍କ ଆଖିରେ ମୀରା ନିଜକୁ ଦେଖେ ସେ ଚିତ୍ରରେ, ବିଦେଶ ଜାଗାରେ ତାଙ୍କ ପୁଅର ଅନେକ ବନ୍ଧୁ ସହକର୍ମୀଙ୍କ ଭିତରୁ ଜଣେ, ଗିରୀଶର ପ୍ରତିଷ୍ଠା, ଲୋକପ୍ରିୟତାର ପ୍ରମାଣ।

କବାଟ ପାଖରେ କଫି ଟ୍ରେ ନେଇ ସୁଜାତା ଉଭା ହୁଏ। କହେ, "ଗିରୀଶ ଉଠିଲେଣି। ଆସନ୍ତୁ ତାଙ୍କ ପାଖେ ବସି କଫି ପିଇବା।"

ଗିରୀଶ ପାଖେ କଫି ପିଉପିଉ ମୀରା ସାଙ୍ଗସାଥୀ, ଅଫିସ୍ ହାଲ୍‌ଚାଲ୍ ଗପିଲା ବେଳେ ସୁଜାତା ଗିରୀଶ ହାତକୁ ଔଷଧ ବଢ଼ାଇ ଦେଉଚି, ତା ପ୍ଲାଷ୍ଟର କରା ଗୋଡ଼ ତଳେ ତକିଆ ରଖୁଚି ସହଜ ହାତରେ।

କେତେଦିନ ପରେ ପୁଣି ପରବର୍ତ୍ତୀ ଦୃଶ୍ୟ। ଗିରୀଶର ଜୀବନ ଶୈଳୀ ବଦଳି ଯାଇଥାଏ, ପୂରା ଭଲ ହେବାକୁ ଆହୁରି ଅନେକ ଦିନ ବାକି ଥାଏ। ଅଫିସ୍ ପାଖରେ ନୂଆ ଘରଟିଏ ନେଇଥାଏ। ପୂରା ଦୃଶ୍ୟ ପ୍ରକୃତରେ ବଦଳିଯାଇଥାଏ ଏଥର।

ଚଢ଼ାଣି ଏଥର କଷ୍ଟ ହେଉଚି, ଗୋଡ଼ ପେଣ୍ଡା ଟାଙ୍କି ଦେଉଚି। ମୀରା ଭାବୁଚି, ଏଥର ମୋର ମୁଣ୍ଡ ପରିଷ୍କାର କରି ବିଚାର କରିବାର ପାଳି। ଦୃଶ୍ୟ କେତେ ମାତ୍ରାରେ ବଦଳିଥିଲା, ଆଉ କେତେ ପରିମାଣରେ ବଦଳାଇଲି ମୁଁ ନିଜେ ? ଗିରୀଶର ବ୍ୟବହାର ବଦଳିଗଲା, ସେଥିପାଇଁ ଦାୟୀ ତା'ର ତଥାପି ଅସୁସ୍ଥ ଦେହ, ସୁଜାତା, ନା ମୋର ସନ୍ଦେହ ?

ଅଫିସ୍‌କୁ କମ୍ ଫୋନ୍ ଆସେ, ଗିରୀଶର ନୂଆ ଫ୍ଲାଟ୍‌ରେ ଆଉ ଜଣେ ସାଙ୍ଗ ବି ରହୁଥାଏ। ଛୁଟି ବେଳେ ଗିରୀଶ ତା ପାଇଁ ଆଉ ଅପେକ୍ଷା କରୁନଥାଏ।

ମୀରା ନିଜେ ଯାଏ ଗିରୀଶର ଅଫିସ୍‌କୁ, ପୁରୁଣା ରେସ୍ତୋରାଁକୁ ଯାଆନ୍ତି ଦିହେଁ। ପାର୍କ୍‌କୁ ଯିବା ପ୍ରାୟ ହୁଏ ନାହିଁ। ଗିରୀଶର ବାଁ ଜଙ୍ଘ ହାଡ଼ ଓ ଆଣ୍ଠୁ, ଯେଉଁଠି ଷ୍ଟିଲ୍ ରଡ୍ ଖଞ୍ଜା ହେଇଚି, କଷ୍ଟ ହୁଏ ସେଠି ଚାଲିଲା ବେଳେ। ଦିନେ ଦିନେ କଫିହାଉସ୍‌ର ପୁରୁଣା କଣିକିଆ ଟେବୁଲ୍‌ରେ ଗିରୀଶ ଅପେକ୍ଷା କରିଥାଏ। ମୀରା ବାରିପାରେ ଆଗଭଳି ସବୁ ଭିଡ଼ ଭିତରୁ ଦୁଇଟି ଆଖି ତାଆରି ଆଡ଼କୁ ଆଉ ଅନେଇ ନଥାଏ। ହାତର ସ୍ପୋର୍ଟସ୍ ପତ୍ରିକା ଖଣ୍ଡିକ ପଢୁଥାଏ ଗିରୀଶ, ମୀରା ପହଞ୍ଚି ତାକୁ ଚମକାଇ ଦିଏ। ପ୍ରଥମେ ପ୍ରାୟ ମୀରା ପଚାରେ, "ଗୋଡ଼ରେ କଷ୍ଟ କେମିତି ଅଛି ?" ଓ କ୍ରମେ ପଚାରେନି କାଳେ ଗିରୀଶକୁ ଭଲ ଲାଗିବନି ଭାବି। ଆଜିକାଲି କମ୍ ହସ ହୁଏ। ମୀରାକୁ ଲାଗେ ସବୁ କଥାବାର୍ତ୍ତା ଭିତରେ ଯନ୍ତ୍ରଣାର ସୁଅଟିଏ ବହୁଥାଏ ସଦାବେଳେ ଗିରୀଶ ଭିତରେ।

ଏଥର ସାଧାରଣ ଜୀବନକୁ ପ୍ରାୟ ଫେରିଆସିଥାଏ ଗିରୀଶ, ଦିନେ କହିଲା, "ଭାବୁଚି ଘରୁ ଯାଇ କିଛି ଦିନ ବୁଲି ଆସିବି। ଭଉଣୀର ବାହାଘର କଥା ଚାଲିଥିଲା, ମା'ର ଦେହ ଭଲରହୁନି।"

"ମା ଚିଠି ଦେଇଥିଲେ ?"

"ନା, ସୁଜାତା ଲେଖିଥିଲା।"

"ସୁଜାତା ତମକୁ ଚିଠି ଦିଏ ? ମୋତେ କହିନା ତ କାହିଁ ?"

"ଏଥିରେ କହିବାର କ'ଣ ଅଛି ? ମୋର ଖିଆଲ୍ ହେଇନି।"

ଦୋଦୋପାଞ୍ଚ ହେଇ ଅଳ୍ପ ହସି ପଚାରିଦେଲା ମୀରା, "ସତ କହୁଚ ? ନା ଜାଣିଶୁଣି ଲୁଚେଇଥିଲ ମୋଠୁ ?"

"ଲୁଚେଇଥିଲି ଯଦି ପୁଣି କହିଲି କେମିତି ?"

କଥାଟା ପ୍ରାୟ ଯୁକ୍ତିଯାଏଁ ପହଞ୍ଚିଥିଲା, ଦୁହେଁ ପାରୁପର୍ଯ୍ୟନ୍ତ ସ୍ୱର ନରମ ରଖିବା ସତ୍ତ୍ୱେ। ମୀରାର ମନେପଡୁଚି, ଏଣିକି ନିଜ ନିଜ ଗଲା ଜୀବନ କି ବ୍ୟକ୍ତିଗତ କଥା ବି କମ୍ କୁହାହୁଏ ପରସ୍ପରକୁ, କଦବା ଯଦି ହୁଏ ତେବେ ହାଲୁକାରେ ଆରମ୍ଭ ହେଉ ହେଉ କେଉଁ ବାଗରେ ସ୍ୱର ଟଣା ତାର ପରି ହେଇଯାଏ, ମୁହଁରୁ ହସ ଲିଭିଯାଇଥାଏ ଦୁହିଁଙ୍କର।

ଏକୁଟିଆ ରାତିରେ ମୀରା ନିଜ ଭୟକୁ ଘଉଡ଼ିଦିଏ ମନଭିତରୁ, ଏସବୁ ଚାଲିଯିବ। ପୁଣି ଫେରିଆସିବ ପୁରୁଣାଦିନ।

ଆଗରୁ ନିଜକୁ ହଜାରେ ଆକଟ କରି ବି ଦେଖାହେଲା ଦିନ ହିଁ ମୀରା ପଚାରିଦେଲା, ସତେକି ଖାଲି ମିଠା ଥଟ୍ଟା କରୁଚି, "କ'ଣ ସୁଜାତା ସାଙ୍ଗେ ଦେଖାହେଲା ?"

ମେନୁ କାର୍ଡ଼ରେ ଦୃଷ୍ଟି ରଖି ଗିରୀଶ ଉତ୍ତର ଦେଲା, ''ହଁ।''

''କେମିତି ଅଛି ?''

''ଭଲ।''

ଜୋର୍‌କରି ନିଜ ପାଟିରେ ଲଗାମ୍ ଦେଉଚି ମୀରା, ଥାଉ ସେତିକି। ଗିରୀଶ ରେଷ୍ଟୋରାଁ ଚାରିଆଡ଼କୁ ଦେଖୁଚି, ଯେତେକି ସେ ନୂଆକରି ଏଠିକି ଆସିଚି। ଏଣୁତେଣୁ କଥା ବୁଲି ଆସି ପୁଣି କେମିତି ଠିକିଯାଏ ସେଇଠି, ''ଆଚ୍ଛା ସୁଜାତା ବାହାହେଇନି କେମିତି ?''

''ହେଇନି।'' ପୂର୍ଣ୍ଣଚ୍ଛେଦର ସ୍ୱର।

ସବୁ କଥାବାର୍ତ୍ତା ଏମିତି ଅନ୍ଧଗଳିରେ ପହଞ୍ଚିଯାଏ ଏଣିକି। ଥରେ ମୀରା ପଚାରିଲା, ''ଆମ ବାହାଘରଟା ହେଉଚି ନା ନାଇଁ ମ ?''

''ମାନେ ?''

''ମାନେ କ'ଣ ?''

''ଏଇଟା ଗୋଟେ ପଚାରିବାର କଥା ?''

''ତମେ ତ ଜମାରୁ କଥାଟା ଉଠାଉନା ଆଜିକାଲି। ପଚାରିବାର କଥା ନୁହେଁ ?''

''ଦେଖ ମୀରା। ଏମିତି ସନ୍ଦେହ କଲେ କୌଣସି ସମ୍ପର୍କ କେବେ ବି ତିଷ୍ଠି ପାରେନି।''

ମୀରା ଦାନ୍ତଚିପି ଚୁପ୍ ରହିଥିଲା, ତର୍କକୁ ଟାଳିବା ଲାଗି ନା ବାମ୍ଫରୁନ୍ଧି ତା ତଣ୍ଟିରୁ ସ୍ୱର ଫୁଟୁ ନଥିଲା ବୋଲି କେଜାଣି।

ଗିରୀଶର ନୂଆ ଘରେ ଫୋନ୍ ନଥାଏ। କୋଡ଼୍‌ରେ ଜରୁରୀ କଥା ଆଜିକାଲି କୁହାଯାଏନି।

ରେଣୁ ମୁହଁରୁ ସେ ଆଶ୍ୱାସନା ଶୁଣେ, ''ତୁ ମିଛରେ ଟେନ୍‌ସ୍ ରହୁଚୁ ମୀରା। ଗିରୀଶ ସାଙ୍ଗରେ ଏଥର ବାହାଘର କଥାଟା ପକ୍‌କା କର। ଦିହେଁ ବାହା ହେଇପଡ଼, ସବୁ ଠିକ୍ ହେଇଯିବ।''

ଏଇ କିଛି ଦିନ ତଳେ। ମା କହିଲେ ମୀରାକୁ, ''ଭଲ ପ୍ରସ୍ତାବଟିଏ ନଜରକୁ ଆସିଚି। ଆମେ ଭାବୁଚୁ କଥାବାର୍ତ୍ତା କରିବା। ତୁ ଆଉ ମନା କରନା।''

ମୀରା ବୋକୀ ଭଳି ମା'ଙ୍କ ମୁହଁକୁ ଅନେଇଥିଲା। ଏତେଦୂର ଗଲାଣି ତାହେଲେ କଥା ? ସମସ୍ତଙ୍କ ଆଖିକୁ ଦିଶିଗଲାଣି। ମା'ଙ୍କ ସାକୁଲା କଥା, ଆଉଁସୁଥିବା ହାତରୁ

ଆସ୍ତେ ନିଜକୁ ଖସେଇ ନେଇଥିଲା ମୀରା, ଚୁପ୍‌ଚାପ୍ ଯାଇ ବାଲ୍‌କୋନିର ଅନ୍ଧାରରେ ବସି ରହିଲା ଅନେକ ବେଳ।

ଶେଷରେ କେତେମତେ ନିଜକୁ ପ୍ରସ୍ତୁତ କରି, ଗଳାରୁ ସବୁ ତିକ୍ତତା ପୋଛି ଦେଇ, ମୁହଁରେ ଆତ୍ମାଭିମାନର ରେଖାଟିଏ ବି ଫୁଟିବାକୁ ନଦେଇ ମୀରା ପଚାରିଲା ଦିନେ, ''ସୁଜାତା ତମ ଜୀବନକୁ ଫେରିଆସିଛି କି ଗିରୀଶ ? ହଁ କି ନା, ଖାଲି ଏତିକି କହ।''

କେତେ ସମୟ ପରେ ଗିରୀଶ ଯେତେବେଳେ ଉତ୍ତର ଦେଲା, ତା ମୁହଁରେ ଅଦ୍ଭୁତ ଗୋଟାଏ ଅସହାୟ ଭାବ ଥିଲା, ''ମଣିଷର ପରିବେଶ ଉପରେ ପୂରା ଅକ୍ତିଆର ଥାଏ କି ମୀରା ? ନିଜ ଇଛା ଅନୁସାରେ ସେ ଘଟଣା ଘଟାଇପାରେ କି ? ଯେଉଁ ଘଟଣାସବୁ ସେ ପଛରେ ଛାଡ଼ିଆସିଥାଏ, କେବଳ ସ୍ମୃତି ବୋଲି ଯାହା ମନେହେଇପାରେ ଏକ ସମୟରେ, ବର୍ତ୍ତମାନ ଜୀବନରୁ ତାକୁ, ତା'ର ଅତୀତକୁ ପୂରାପୂରି ଅଲଗା କରି କାଟି ଫୋପାଡ଼ି ଦେଇ ହୁଏ କି ?''

ନିଜର ଶୂନ୍ ପଡ଼ିଆସୁଥିବା ଦେହକୁ ମୁହଁରେ ଆଦୌ ନ ଫୁଟାଇ ମୀରା ପଚାରିଲା, ''ମୋ ପ୍ରଶ୍ନର ଉତ୍ତର ଦିଅ।''

''ଯାଠୁ ବେଶୀ ମୁଁ ନିଜେ ବି ଜାଣିନି। ମୋତେ କିଛି ସମୟ ଦିଅ ପ୍ଲିଜ୍।''

ମୀରା ଦେଖିପାରୁଥିଲା ଯନ୍ତ୍ରଣାର ସୁଅଟିଏ ବହୁଚି ଗିରୀଶ ଭିତରେ। ଗିରୀଶକୁ ସମୟ ଦେବା ଲାଗି ହେଉ ବା ସାହସର ଅଭାବରୁ ହେଉ, ଆଜିକାଲି ମନେମନେ ହିଁ କେତେ ପ୍ରକାର କଥାବାର୍ତ୍ତା ପ୍ରସ୍ତୁତ କରୁଥାଏ ମୀରା। ମୋ ସାଙ୍ଗେ ବି କେବେ ଦେଇଥିଲା କଥାରେ ବନ୍ଧା ପଡ଼ିଯାଇଚ କି ଗିରୀଶ ? ଥରେ ଯେମିତି ସୁଜାତା ପାଖରେ ପଡ଼ିଯାଇ ଅନନ୍ୟୋପାୟ ହେଇଯାଇଚ' ବୋଲି ତମର ମନେ ହେଇଥିଲା ? ଆଉରି ଭାବେ ସେ ଆତ୍ମସମ୍ମାନ, ତ୍ୟାଗର ନିଦର୍ଶନ ଦେଖାଇ କହିଦେବ, ଯାଅ ତମେ ଯୁଆଡ଼େ ଯିବା କଥା। ମୋ ତରଫରୁ ମୁଁ ତମକୁ ମୁକ୍ତ କରିଦେଲି।

ତଥାପି ଭାବନାଟା ହିଁ ଅସହ୍ୟ ଲାଗେ ତାକୁ, ଛାତି ଭିତରେ କିଛି ଚୂରି ଗୁଣ୍ଡ ହୋଇଯାଏ। ନା ଏକଥା ହେଇପାରିବ ନାଇଁ। ଏ ଆତଙ୍କ ମିଛ। ମିଛ ବୋଲି ମୁଁ ପ୍ରମାଣିତ କରିଦେବି। ଗିରୀଶକୁ ମୁଁ ଯିବାକୁ ଦେବିନାହିଁ। ଯିବାକୁ ବସିଲେ ତା ସାମ୍ନାରେ ଠିଆକରେଇ ଦେବି ତା କଥାକୁ, ବିବେକକୁ, ଦୁନିଆ ଆଗରେ ମୋର ଲୋକହସା ଅସହାୟତାକୁ।

ଜୟଧ୍ୱନି ପ୍ରବଳ ଶୁଭିଲାଣି। ଖଣ୍ଡେ ଦୂରରୁ ପିଲା ଦିହେଁ ଡାକ ପକେଇଚନ୍ତି, ''ମନ୍ଦିର ଦିଶିଲାଣି। ଶୀଘ୍ର ଚାଲ।'' ସିନ୍ଦୁରା ଫାଟି ଆସୁଚି। ଅପୂର୍ବ ଦିଶୁଚି ଚାରିଆଡ଼।

ସଂବିତ୍ କହୁଚି, ''ଯାହାର ଯାହାସବୁ ମାଗିବା କଥା ସର୍ଟଲିଷ୍ଟ କରିଦେଇଥାଆ । ନ ହେଲେ ବଜାର ଯାଇ ଅସଲ କଥାଟା କିଣିବାକୁ ଭୁଲିଗଲା ଭଳି ହେବ ଦର୍ଶନ ବେଳକୁ ।''

ଆଗରୁ ପହଞ୍ଚି ସାରିଥିବା ଛୋଟିଆ ଦଳଟିର ଅନ୍ୟମାନେ ହସୁଛନ୍ତି, ଉତ୍ସାହରେ କଥା ଯୋଡୁଛନ୍ତି । ଆଉ ଟିକକରେ ଦେବୀ ଉଭାହେବେ ଆଗରେ । ପ୍ରଶ୍ନ କରାଯାଏ ନାହିଁ, ସନ୍ଦେହ ପୋଛି ଦିଆଯାଏ । ବିନା ସର୍ତ୍ତରେ, ଅନାବିଳ ବିଶ୍ୱାସରେ ସମର୍ପି ଦିଆଯାଏ ନିଜକୁ, ଆଉ ମାଗିନିଆଯାଏ ବର ।

ମୀରା ଦୃଢ଼ ନିଶ୍ଚୟ କରୁଚି । ମାଗିବି ମୁଁ, ଗିରୀଶ ମୋର ହେଉ ବୋଲି । ପରିଶ୍ରାନ୍ତ ମନ ଭିତରେ ଆଗପଛ ମିଶାମିଶି ହେଇ ଗୋଡ଼ିଆଗୋଡ଼ି ହେଉଚନ୍ତି ଦୃଶ୍ୟମାନ । ମାଗିବି ମୁଁ, ମୋତେ ଦୃଶ୍ୟ ଏକ୍, ଦୁଇ ତିନ୍‌କୁ ଫେରେଇ ଦିଅ ବୋଲି ।

ଅନନ୍ୟୋପାୟ ପ୍ରଶ୍ନ ଉଠୁଚି ମନରେ, କିନ୍ତୁ ତାପରେ ପୁଣି ଦୃଶ୍ୟ ଚାରି ପାଞ୍ଚ ଛଅ ସାତ ବି ଅବଶ୍ୟମ୍ଭାବୀ କି ? ଛଅ ସାତରେ ପହଞ୍ଚିଲା ପରେ ଫେରିଯାଇହୁଏ କି ଦୃଶ୍ୟ ଏକ ଦୁଇକୁ ସ୍ଥାୟୀ ଭାବେ ?

ଆଖପାଖ ଭକ୍ତଙ୍କ ଉଲ୍ଲାସ, ପୂଜା, ଆରତି ଘଣ୍ଟଧ୍ୱନିରେ କମ୍ପୁଚି । ପିଲା ଦିହେଁ ଉଚ୍ଚାଟରେ ଡେଉଁଛନ୍ତି—''ଆଣ୍ଟି, ସୁଡ଼ଙ୍ଗ ଭିତରେ ଯିବାକୁ ହେବ, ଡରିବ ନାହିଁ ତ ?''

''ଗୁରୁଣ୍ଡିବାକୁ ବି ପଡ଼ିବ କାଳେ ତା ଭିତରେ ଏକୁଟିଆ, ତେବେ ଯାଇ ତମେ ଯାଇପାରିବ ଦେବୀଙ୍କ ପାଖକୁ ।''

ଲୁଗାପଟା ଭିଡ଼ି ତିଆର ହେଉଛନ୍ତି ସଭିଏଁ । ଯାଉଛନ୍ତି ଗୋଟିକ ପରେ ଗୋଟିଏ ।

ମୀରା ପଚାରୁଚି ନିଜକୁ କାତରରେ, କି୍ ବର ମାଗିବି ମୁଁ ? ସତରେ କ'ଣ ମୋ ପାଇଁ ଅନ୍ୟ ସବୁ ରାସ୍ତା ବନ୍ଦ, ସେଇ କେବଳ ଗୋଟିଏ ରାସ୍ତା, ସାଙ୍ଗରେ ଥିବ ଗିରୀଶ ? ସିଏ ପ୍ରକୃତରେ ନିଜେ ଗିରୀଶ ନ ହେଇ ସମାଜର ଡୋରିରେ ବନ୍ଧା ମୁଖାଟିଏ ହେଇଥାଉ ପଛେ ?

ମୀରା ପ୍ରାଞ୍ଜଳ ବୁଝିପାରୁଚି ତା'ର କାମ୍ୟ ଗିରୀଶ ନିଜେ, ଯଦି ତା ପୁଣିଥରେ ସମ୍ଭବ ହୁଏ ।

ଖାଲି ପାଦରେ ଶୀତଳ ଗୁମ୍ଫା ଭିତରକୁ ପାଦ ବଢ଼ାଉଚି ମୀରା ସାହସରେ । ଥରେ ଗୋଡ଼ ପକେଇଲେ ଆଉ ଭୟନାହିଁ ।

ନିଜ ଭିତରୁ ନୂଆ ସ୍ୱରଟିଏ ଶୁଭୁଚି, ବଜାର ତିଆରି ମୁଖାଟିଏ ହିଁ ଯଦି ନିହାତି ନ ହେଲେ ନଚଳେ, ତେବେ ଘରେ ମା' ଆଣିଥିବା ପ୍ରସ୍ତାବରେ ଫରକ୍ କ'ଣ ?

ବହିଯାଇଥିବା ସମୟ, ଜୀବନର କିଛି ମଧୁର ଅଂଶ ସ୍ମୃତି ହେଇ ବରଂ ରହୁ, ଲଗାମ୍ ଭାବେ ହିଁ ବ୍ୟବହାର ହେବା ଦରକାର କି ଆରେକ ଉପରେ ସବାର୍ ହେବା ପାଇଁ ? ଡୋରିବନ୍ଧା ମୁଖା ମୋର ଦରକାର ବୋଲି ଯେଉଁ ଚାପ ଚାରିଆଡୁ ମୋତେ ଅନ୍ଧ କରି ଦେଉଛି, ସେଇଥିରେ ଆଉରି ଅଣନିଶ୍ୱାସୀ କାହିଁକି କରିଦେଉଚି ମୁଁ ମୋ ଭିତରେ ତଥାପି ଜୀଇଁଥିବା କୋମଳ ଜୀବଟିକି ?

ଆଉ ମୁଣ୍ଡରୁ ଆଲୁଅ ଦିଶିଲାଣି । ଚାଲୁଚାଲୁ କେତେବେଳେ ସରିଆସିଲା ପଥୁରିଆ ସୁଡ଼ଙ୍ଗ ଜଣାପଡ଼ିଲାନି । ଏଥର ସେ ବର ମାଗିବାକୁ ପ୍ରସ୍ତୁତ । ପ୍ରିୟଜନଟିର ମୁଣ୍ଡ ଉପରୁ ନିଜ ଆଶା ଆକାଙ୍‌କ୍ଷାର ବୋଝ ଫେରେଇ ନେବାକୁ ସକ୍ଷମ ହେବାର ବର । ବିନା କ୍ଷୋଭ ଆକ୍ରୋଶରେ ତା ଆଖି ଦେଇ ଦେଖିବାକୁ ଚେଷ୍ଟା କରିବାର, ପୁଣି ସାଙ୍ଗସାଥୀ ଗହଣରେ ଗୀତ ଗାଇ ଗାଇ ଏକୁଟିଆ ବାଟ ଚାଲିପାରିବାର ବର ।

❑❑❑

# ଦ୍ୱୀପାନ୍ତର

ଏବେ କଲ୍ୟାଣୀ ଭାବି ହେଉଛନ୍ତି ଠିକ୍ କେଉଁଦିନ କି କାରଣରୁ ତାଙ୍କର ଏମିତି ଦ୍ୱୀପାନ୍ତର ହେଲା । ରେଶମୀ ଉଷୁମ ଖୋସାଟିଏ ଭଳି ଘର ସଂସାରଟି କେଉଁ ଛଟକରେ ହାତରୁ ଓହରିଗଲା । ଆଉ ସମ୍ପର୍କ ଉପରେ କେଉଁଠୁ ଛୁଞ୍ଚି ମୁନଟିଏ ନ ବାଜି ନିକଟତମ, ଆତ୍ମୀୟତମ, ସର୍ବୋପରି ଅର୍ଦ୍ଧାଙ୍ଗରୁ ବଳି ସ୍ୱାମୀ ତାଙ୍କର ଅଚିହ୍ନା ପାଲଟିଗଲେ, ଜାଣି ବି ହେଲାନାଇଁ କେତେବେଳେ । ଏଯାବତ୍ ମଧୁର ଦାମ୍ପତ୍ୟ ଜୀବନ ଆମ୍ବିଳେଇଗଲା ରାତାରାତି ।

ଏ ସବୁର ଆରମ୍ଭ ହେଲା ନିଃସନ୍ଦେହ ତାଙ୍କ ପ୍ରାତଃ ଭ୍ରମଣରୁ । କହିବାକୁ ଗଲେ ତାଙ୍କର ବ୍ଲଡ୍‌ପ୍ରେସରରୁ । ଦେହର ଓଜନ ଆବଶ୍ୟକତାରୁ ବେଶୀ ବଢ଼ିଯିବାରୁ । ତାଙ୍କର ଅସୁସ୍ଥତାରୁ । ଯଦିଓ ସେ ଅସୁସ୍ଥତା ତାଙ୍କର କିଛି ଅସୁବିଧା ସେଯାଏଁ ସୃଷ୍ଟି କରିନଥିଲା । ସବୁକିଛି ଚାଲିଥିଲା ଠିକ୍‌ଠାକ୍ । ସ୍ୱାମୀ ପାର୍ଥଙ୍କ ବ୍ୟସ୍ତ ଚାକିରି ଜୀବନ ସତ୍ତ୍ୱେ ପରିବାର ସହିତ ନିବିଡ଼ ବନ୍ଧନ, ସ୍ନେହୀ ସୁଧାର ପୁଅର ନାମୀ କଲେଜରେ ସିଟ୍, ଝିଅ ଅପର୍ଣ୍ଣାର ଭାରତ ନାଟ୍ୟମ୍‌ରେ ଖ୍ୟାତି । ଅଜସ୍ର ବନ୍ଧୁମିଳନ, ପାର୍ଟି, ସିନେମା ଥିଏଟର ଯାତ୍ରା ମେଳା । ତା'ପରେ ଦିନେ ଘରୋଇ ଡାକ୍ତରଙ୍କ ହଠାତ୍ ଆବିଷ୍କାର ଯେ କଲ୍ୟାଣୀ ସଂପୂର୍ଣ୍ଣ ସୁସ୍ଥ ନୁହନ୍ତି, ତାଙ୍କ ବ୍ଲଡ଼ପ୍ରେସର ବେଶୀ ଅଛି । ଦେହ ସୁସ୍ଥ କରିବା ଲାଗି କିଛି ଖାଦ୍ୟ କଟକଣା ଔଷଧପତ୍ର ବାହାରେ ପ୍ରତିଦିନ ଅନ୍ତତଃ ଘଣ୍ଟାଏ ଚାଲିବା ଦରକାର ଖୋଲା ପବନରେ ।

କଲ୍ୟାଣୀ ଏ ଘଟଣାକୁ ପାସଙ୍ଗରେ ପକାଇ ନଥିଲେ । ରୋଗ ବି ଏଯାଏଁ କିଛି କଷ୍ଟ ଦେଇନାହିଁ, ନିଦାନ ତହୁଁବଳି ସରଳ । ଏ ବୟସରେ ପହଞ୍ଚିଲାବେଳକୁ କିଛି-ନା-କିଛି ଗୋଟାଏ ଜଣାଶୁଣା ଅସୁସ୍ଥତା ବରଂ ଥିବା ହିଁ ବେଶୀ ସ୍ୱାଭାବିକ କଥା । ତେବେ ପ୍ରଥମେ ସେ ବୁଝିପାରି ନଥିଲେ ଯେ ଡାକ୍ତରଙ୍କ ନିର୍ଦ୍ଦେଶ ପାଳନ କରିବା ସେତେ ସରଳ ନୁହେଁ ପ୍ରକୃତରେ । ବିଶେଷତଃ ତାଙ୍କ ପକ୍ଷେ, ଯିଏ ଅକାରଣ ଏକୁଟିଆ ଆଦୌ ହିଁ ବାହାରନ୍ତି ନାହିଁ କୁଆଡ଼େ । ତା' ପୁଣି ପାଦରେ ଚାଲି ।

ସ୍ୱାମୀ ପାର୍ଥବାବୁ ଡେଙ୍ଗା, ବଳିଷ୍ଠ, ପଦସ୍ଥ ଅଫିସର। ଦିନସାରାର ସମୟ ତାଙ୍କର ଉଦାର ଭାବେ ନିରୂପିତ ଥାଏ ସବୁକାମ ପାଇଁ, ସମସ୍ତଙ୍କ ପାଇଁ। ସେଥିରେ ଝିଅର ଗେହ୍ଲା ଆବ୍‌ଦାର୍ ପାଇଁ ସମୟ ଥାଏ, ପୁଅ ସାଙ୍ଗରେ ବସି ବିଦେଶରୁ ମଗା ଫର୍ମ ଭରିବା ପାଇଁ ବି, ଆଉ କଲ୍ୟାଣୀଙ୍କର ଝିଆରୀର ଡାଇଭୋର୍ସ କେଶ୍‌ଠୁ ଆରମ୍ଭ କରି ବ୍ଲାଉଜ ଖରାପ ସିଲେଇ କରିଥିବା ଦର୍ଜିଯାଏଁ ସବୁ ଟିଖି ନିଖି ଖବର ପାଇଁ ମନ ତାଙ୍କର ଉନ୍ମୁକ୍ତ ଥାଏ ସଦାବେଳେ। ତେବେ ସ୍ତ୍ରୀଙ୍କ ସାଙ୍ଗରେ ନିୟମିତ ଘଣ୍ଟାଏ ଚାଲିବା ପାଇଁ ସମୟ କାଢ଼ିବା ଭିନ୍ନ କଥା।

କଲ୍ୟାଣୀ ଯେତେବେଳେ ଅଭିମାନରେ କହିଲେ—"ଏକୁଟିଆ ରାସ୍ତାଟାରେ ଡଗଡଗ କିଏ ମୋର ଚାଲିବ ମ ? ତମେ ଚାଲିବ ଯଦି ସାଙ୍ଗରେ ଯିବି। ଏତିକି ସମୟ ମୋ ଲାଗି କାଢ଼ିପାରିବ ନାହିଁ ?"

କହିଦେଇସାରି ପାର୍ଥଙ୍କ ବ୍ୟଥିତ ମୁହଁକୁ ଚାହିଁଦେଇ ସେ ନିଜେ ଆହୁରି ବ୍ୟଥିତ ହୋଇପଡ଼ିଲେ। କେମିତି ଜାଣିଶୁଣି ଏମିତି ଅପବାଦ ଦେଇପାରୁଚନ୍ତି ସେ ନିଜେ, ହେଉ ପଛେ ଅଭିମାନରେ। କଥା ହେଲା ଦିହିଁଙ୍କ ଜୀବନ ଏମିତି ଗୁନ୍ଥାଗୁନ୍ଥି ହେଇ ଚାଲିଥାଏ ଯେ ପରସ୍ପର ପାଇଁ ଅଲଗା କରି ସମୟ କାଢ଼ିବାକୁ ପଡ଼ିନାହିଁ କେବେହେଲେ। ବାହାଘର ହେଇଥିଲା କାହିଁ ସେ କେତେ ଯୁଗ ତଳେ, ଆଖି ପାଉନାହିଁ ଏବେ ଅନେଇଲେ। ଲାଗେ ଜନ୍ମ ହେଲା ଦିନୁ ଦିହେଁ ଏକାଠି ଜୀଇଁ ଆସିଚନ୍ତି ଜୀବନ। ବେଳେ ବେଳେ କଲ୍ୟାଣୀ କହିପକାନ୍ତି—"ସେଇମ ଆମ ସ୍କୁଲରେ ଯେଉଁ ମଣ୍ଡଳ ସାର୍ ଭୂଗୋଳ ପଢ଼ାଉ ନଥିଲେ ?" ପାର୍ଥ ହସ ସମ୍ଭାଳି କହନ୍ତି—'କିଓ ... ତମ ସାଙ୍ଗରେ ମୁଁ ପୁଣି ଭୂଗୋଳ ପଢ଼ିଲି କେବେ ?' କଲ୍ୟାଣୀ ଭୁଲ୍ ବୁଝନ୍ତି, ହସନ୍ତି, କହନ୍ତି—'ମତେ ତମେ ଜାଣି ନଥିଲ ଏମିତି ଗୋଟାଏ ସମୟ ଥିଲା, ସତରେ ମୋର ବିଶ୍ୱାସ ହୁଏନାହିଁ ଭାବିଲେ।' ଓ ପୁଣି ଭାବନ୍ତି, ପାର୍ଥ ନଥାଇ ଆଉ କିଏ ଥିଲେ ଜୀବନଟା କେମିତି ହେଇଥାଆନ୍ତା ? ଏପରି ନହେଇ ଆଉ କେଉଁପରି ଜୀବନ ବା ଯଥାର୍ଥ ହେଇଥାଆନ୍ତା ? ବା ସମ୍ଭବ ଥିଲା ଭଲା ? ତା'ପରେ ସେ ପ୍ରଶ୍ନ ଉତ୍ତର ସବୁକୁ ମନରୁ ହୁରୁଡ଼ାଇ ଦିଅନ୍ତି।

ସେଦିନ କିନ୍ତୁ ଅଫିସ ଫେରନ୍ତା ରାସ୍ତାରେ ଦରକାରୀ ଔଷଧ ନେଇ ପାର୍ଥ ଫେରିଲେ ଓ କହିଲେ—'କାଲି ଭୋର୍ ପାଞ୍ଚଟାରେ ଘଣ୍ଟାରେ ଆଲାର୍ମ ଦେବା, ଆଉ ୱାକ୍‌ରେ ଯିବା ଦିହେଁ, ହେଲା ? ଏଇ ନିୟମରେ ଆଉ ଏପାଖ ସେପାଖ ନାହିଁ, ମନେ ରଖିଥାଅ।'

ପରବର୍ତ୍ତୀ ଦିନାକେତେ ନିଜେ ପାର୍ଥ ଭୋରରୁ ଉଠେଇଲେ ତାଙ୍କୁ ଓ ଦିହେଁ ତିଆରି ହେଇ ବାହାରିପଡ଼ିଲେ ମର୍ଣ୍ଣିଂ ୱାକ୍‌ରେ। ଚାରି-ଛଅ ଦିନ ପରେ ସେ ନିୟମ ଭାଙ୍ଗିଗଲା, ଦିହେଁ ପୂର୍ବଦିନ ଡେରିରେ ପାର୍ଟିରୁ ଫେରିଥିଲେ। ତା'ପରେ କେତେଦିନ ଅଫିସ୍ ନଥିପତ୍ରଗୁଡ଼ାଏ ଆସିଲା ଘରକୁ, ଅଧରାତି ଯାଏ ବସି ନସାରିଲେ ନଚଳେ। ସେଇଠୁ ସ୍ଥିର ହେଲା ସନ୍ଧ୍ୟାବେଳେ ଚାଲିବେ। ତେବେ ଦିନକ ପରେ ଆଉ ଶୀଘ୍ର ଅଫିସରୁ ଫେରିବା ପାର୍ଥଙ୍କ ଦେଇ ହେଲାନାହିଁ। ହଉ ହେଲା, ରାତି ଖାଇବା ପରେ ଚାଲିବା। କଲ୍ୟାଣୀଙ୍କର ଏଣେ ରୋଷେଇ କାମ ଛିଡୁଛିଡୁ ଡେରିହୁଏ। ପନ୍ଦର ଦିନ ପରେ ଡାକ୍ତର ପରୀକ୍ଷା ନିରୀକ୍ଷା କରି କହିଲେ—"ଆପଣ ଭାଉଜ କମାରୁ ସିରିୟସ୍‌ଲି କଥାଟା ନେଉନାହାନ୍ତି। ଆପଣଙ୍କ ଲାଗି ନିୟମିତ ଚାଲିବା ଦରକାର ନିହାତି।" ଶେଷକୁ ବହୁ ଆଲୋଚନା ତର୍କ ପରେ ସ୍ଥିର ହେଲା ପାର୍ଥ ଘଡ଼ିରେ ଆଲାର୍ମ ଦେବେ, ସକାଳୁ କଲ୍ୟାଣୀଙ୍କୁ ଡାକିବେ ଓ ତାଙ୍କ ଉତ୍ସାହ ବଢ଼େଇବେ କିନ୍ତୁ ପ୍ରାତଃଭ୍ରମଣରେ ଯିବେ କଲ୍ୟାଣୀ—ଏକୁଟିଆ।

ଘରୁ ବାହାରି ଡାହାଣହାତି ଗଳିରେ ସିଧା ଚାଲିଗଲେ ବଡ଼ ସରକାରୀ ସ୍କୁଲ୍‌ହତା ପଡ଼େ, ତା' ସାମ୍‌ନାକୁ ଖେଳପଡ଼ିଆ। ପଡ଼ିଆ ଚାରିପାଖକୁ ସୁନ୍ଦର ବଙ୍ଗଳା ଧାଡ଼ି ଧାଡ଼ି, କୃଷ୍ଣଚୂଡ଼ା ଜାକାରେଣ୍ଡା ଘେରା ସୁନ୍ଦର ପକ୍‌କା ରାସ୍ତା। ବଡ଼ି ଅନ୍ଧାରରୁ ସେଠି ଦେଖାଯାଆନ୍ତି ପ୍ରାତଃଭ୍ରମଣକାରୀମାନେ। ଜଗିଙ୍ଗ୍ ସୁଟ୍ ସ୍ପୋର୍ଟସ ଜୋତାରେ ହାଲୁକା ଦୌଡ଼ ମାରୁଥିବା ଗୋଟିକିଆ ଯୁବକ, ଯୁବତୀ, କିମ୍ବା ଗୋଟିଏ ଅଧେ ତରୁଣ ଦମ୍ପତି, ବାକି ଅନ୍ୟମାନେ ଧୀର ପାହୁଲ ବୟସ୍କ ଲୋକ, ବେଶୀ ଭାଗ ପୁରୁଷ। ପାର୍ଥଙ୍କ ସାଙ୍ଗରେ ଦିନ କେତେଟା ବୁଲିବା ଭିତରେ ହିଁ ମୁହଁଚିହ୍ନା ହେଇଯାଇଥିଲେ ଅଧିକାଂଶ। ଏଥର ତେଣୁ କଲ୍ୟାଣୀଙ୍କୁ ଏକୁଟିଆ ବୁଲି ବାହାରିବା ସେତେ ବେଶୀ ମାଡ଼ିପଡ଼ିଲା ନାହିଁ। ବରଂ ବଡ଼ିସକାଳୁ ଘରୁ ବାହାରିଲାବେଳକୁ ତାଙ୍କର ମିଶାମିଶି ଭାବଟିଏ ହୁଏ, ଦେହ ପାଖକୁ ଲାଗି କେହି ନାହାନ୍ତି ସଚେତନ ସାବଧାନ ହେଲାଭଳି କିନ୍ତୁ ନିରାପଦ ଲାଗିବା ଭଳି ଅଳ୍ପ ଦୂରରେ ଅଛନ୍ତି ସମସ୍ତେ, ସମଧର୍ମୀ ସମବ୍ୟଥୀ ଲୋକେ। ଅଶିଣ ମାସର ଭୋର୍ ବେଳେ ରାସ୍ତା ସେପାଖ ନିମ୍ବ ଗଛଟି ତା'ର ସବୁଜ ଡାଳପତ୍ର ଆକାର ପ୍ରକାର ନେଇ ସଦ୍ୟ ବାହାରି ଆସୁଥାଏ ହାଲୁକା ରଙ୍ଗମରା ଆକାଶ ଦେହରୁ। ଗଳି ଟପି ସ୍କୁଲର ନାଲି ପାଚେରି କୋଣଠି ପହଞ୍ଚିଲାବେଳକୁ ଠିକ୍ ସେଇ ଚକଚକିଆ ଦୌଡ଼-ଜାମା ପିନ୍ଧା ଯୋଡ଼ିଟି ସାଙ୍ଗରେ ଭେଟ ହୁଏ, ଆଉ କେଇ ହାତ ଆଗକୁ ଯାଉଣୁ ନେଳୀ ଜଙ୍ଘିଆପିନ୍ଧା ଟୋକା ପଛପାଖରୁ ଧାଇଁ ଧାଇଁ ଆସି ଟପି ଚାଲିଯାଏ ଆଗକୁ, ସେ

ଖେଳପଡ଼ିଆର ଗୋଟିଏ ଘେର ବୁଲିଲାବେଳକୁ ଏ ଟୋକା ଚାରି ଛଅଥର ଏମିତି ପଛରୁ ଆସି ଟପି ଧାଇଁ ଚାଲିଯାଇଥାଏ । ଦିଇଟି ବଙ୍ଗଳା ହତା ମଝିରେ ଅଶ୍ୱତ୍ଥ ଗଛତଳେ ଛୋଟ ହନୁମାନ ମନ୍ଦିରଟିଏ ଯେଉଁଠି ଅଛି ତା'ରି ପାଖାପାଖି ହେଲାବେଳକୁ ଗଳିରାସ୍ତାରୁ ବାହାରି ଆସୁଥାଏ କୁର୍ତ୍ତା ପାଇଜାମା ପିନ୍ଧା ଲୋକଟିଏ, ସୁନୀଲ୍ ମିତ୍ର । କ୍ରମେ କାହା ସଙ୍ଗେ ଚିହ୍ନା ହସ ଟିକେ, କିଏ ମୁଣ୍ଡ ଝୁଙ୍କାଏ ବା ହାତ ଟିକିଏ ଉଠେଇଦିଏ, କିଏ ବା କିଛି ନାହିଁ । ଚାରିପାଖ ଗଛମାନଙ୍କରେ, ରାସ୍ତାକଡ଼ରେ ପଡ଼ିଆ ଭିତରେ ଚଢ଼େଇ ଗୁଣ୍ଡୁଚିମୂଷାଙ୍କ ହଇଚଇ ବଢ଼ି ବଢ଼ି ଆସୁଥାଏ । ଆଉ ପହରକ ପରେ ଯାହାକିଛି ଶୁଭିବ ଦିଶିବ କେବଳ ଚାରିଆଡ଼ ରାସ୍ତାର ଗାଡ଼ିମଟର, ବୁଲାବିକାଳିଙ୍କ ଭଳି ଭଳିକି ଡାକ ।

ସେତେବେଳକୁ କଲ୍ୟାଣୀ ଘରେ ପହଞ୍ଚି ଯାଇଥାନ୍ତି । ଝିଅ ପୁଅ ସ୍କୁଲ କଲେଜ ପାଇଁ ତିଆରି ହେଉଥାନ୍ତି । ପାର୍ଥ ଚା' କପ୍ ଧରି ଖବରକାଗଜ ପଢୁଥାନ୍ତି । କଲ୍ୟାଣୀ ପାଖରେ ବସନ୍ତି, ଟି-ପଟ୍‌ରୁ ନିଜ ପାଇଁ ଚା' କପେ ଢାଳନ୍ତି । ପାର୍ଥଙ୍କ ହାତରୁ ଖବରକାଗଜ ଫର୍ଦ୍ଦଟିଏ ନେଇ ପଢ଼ନ୍ତି ଓ ଗପନ୍ତି । ମଝିରେ ଉଠି ଭିତରୁ ଚାକରାଣୀର କାମ ଟିକିଏ ତଦାରଖ କରି ଆ'ସନ୍ତି । ଝିଅ ଖୋଜୁଥିବା ଡ୍ରେସ୍ ଆଲମାରିରୁ କାଢ଼ି ଦିଅନ୍ତି, ପୁଣି ଫେରିଆସି ବସନ୍ତି ପାର୍ଥ ପାଖରେ, ଗପନ୍ତି । ଭିତରୁ ପୁଅ ପାଟିକରେ ତା' କଲେଜ ପିକ୍‌ନିକ୍ ପାଇଁ ଟଙ୍କା ଦରକାର, ଫୋନ୍ ଘଣ୍ଟିବାଜେ । ପାର୍ଥ ଉଠି ଅଫିସ ପାଇଁ ତିଆରି ହୁଅନ୍ତି । ରାସ୍ତାରେ ଗାଡ଼ିମଟର ଗୋଳ ବଢ଼ି ବଢ଼ି ଯାଏ । ସବୁ ଭିତରେ କଲ୍ୟାଣୀ ଗପୁଥାଆନ୍ତି । ପାର୍ଥ ସବୁକଥା ଶୁଣନ୍ତି କି ନଶୁଣନ୍ତି, ପ୍ରଶ୍ନମାନଙ୍କର ଉତ୍ତର ଦିଅନ୍ତି କି ନଦିଅନ୍ତି, ଲୋଡ଼ାନାଇଁ । ପାଖରେ କେଉଁଠି ଥାଆନ୍ତି ।

କ୍ରମେ ପ୍ରାତଃଭ୍ରମଣ ସମୟର ଚରିତ୍ରମାନେ ବି ଅନାୟାସ ଆସିଯାଆନ୍ତି କଲ୍ୟାଣୀଙ୍କ ଗପିବାରେ । "ଆଜି ସେ ନେଳୀ ଢଙ୍ଗିଆ ଟୋକା ସାଙ୍ଗରେ ଢେଙ୍ଗୀ ଟୋକୀଟିଏ ଦଉଡୁଥିଲା, ଆମ ନାୟାରଙ୍କ ଝିଅ ପରି ଦିଶୁଥିଲା ତ ।" "ସେ ଜଗିଙ୍ଗ୍ ସୁଟ୍ ଯୋଡ଼ି କେତେଟା ଡ୍ରେସ କିଣିଛନ୍ତି କେଜାଣି ମର୍ଣ୍ଣିଂଓ୍ୱାକ୍ କରିବେ ବୋଲି ।" କଲ୍ୟାଣୀଙ୍କ ଦୃଶ୍ୟମାନ ସଂସାରରେ କ'ଣ ବା ଏମିତି ଥିଲା ଯାହା ତାଙ୍କ ଗପିବା ଭିତରେ ନ ଆସିବ ପାର୍ଥଙ୍କ ବା ପରିବାରର ଦୃଷ୍ଟିକୁ । ତେଣିକି ସେକଥା କାହା କାନ ଦେଇ ପଶୁ ବା ବାସନକୁସନ ଠୁଣ୍‌ଠାଣ୍ ଟିଭି ନିଉଜ୍ ଗାଡ଼ି ହର୍ଣ୍ଣ ଭିତରେ ମିଳେଇଯାଉ ।

ଏ ଭିତରେ ପରିଚୟ ବି ବଢ଼ିଥିଲା କଦବା କାହା ସାଙ୍ଗରେ । ଥରେ ମୁଣ୍ଡ ଟୁଙ୍ଗାରି ସାରି ଚିପା ହସରୁ ପୂରା ଓଠ ଖୋଲା ହସଟିଏ ହସିଦେଇ ସୁନୀଲ୍ ମିତ୍ର

ପରବର୍ତ୍ତୀ ଦିନାକେତେ ନିଜେ ପାର୍ଥ ଭୋରରୁ ଉଠେଇଲେ ତାଙ୍କୁ ଓ ଦିହେଁ ତିଆରି ହେଇ ବାହାରିପଡ଼ିଲେ ମର୍ଣ୍ଣିଂ ୱାକ୍‌ରେ । ଚାରି-ଛଅ ଦିନ ପରେ ସେ ନିୟମ ଭାଙ୍ଗିଗଲା, ଦିହେଁ ପୂର୍ବଦିନ ଡେରିରେ ପାର୍ଟିରୁ ଫେରିଥିଲେ । ତା'ପରେ କେତେଦିନ ଅଫିସ୍ ନଥିପତ୍ରଗୁଡ଼ାଏ ଆସିଲା ଘରକୁ, ଅଧରାତି ଯାଏ ବସି ନସାରିଲେ ନଚଳେ । ସେଇଠୁ ସ୍ଥିର ହେଲା ସନ୍ଧ୍ୟାବେଳେ ଚାଲିବେ । ତେବେ ଦିନକ ପରେ ଆଉ ଶୀଘ୍ର ଅଫିସରୁ ଫେରିବା ପାର୍ଥଙ୍କ ଦେଇ ହେଲାନାହିଁ । ହଉ ହେଲା, ରାତି ଖାଇବା ପରେ ଚାଲିବା । କଲ୍ୟାଣୀଙ୍କର ଏଣେ ରୋଷେଇ କାମ ଛିଡ୍ରୁଛିଡ୍ରୁ ଡେରିହୁଏ । ପନ୍ଦର ଦିନ ପରେ ଡାକ୍ତର ପରୀକ୍ଷା ନିରୀକ୍ଷା କରି କହିଲେ—"ଆପଣ ଭାଉଜ କମାରୁ ସିରିୟସ୍‌ଲି କଥାଟା ନେଉନାହାନ୍ତି । ଆପଣଙ୍କ ଲାଗି ନିୟମିତ ଚାଲିବା ଦରକାର ନିହାତି ।" ଶେଷକୁ ବହୁ ଆଲୋଚନା ତର୍କ ପରେ ସ୍ଥିର ହେଲା ପାର୍ଥ ଘଡ଼ିରେ ଆଲାର୍ମ ଦେବେ, ସକାଳୁ କଲ୍ୟାଣୀଙ୍କୁ ଡାକିବେ ଓ ତାଙ୍କ ଉତ୍ସାହ ବଢ଼େଇବେ କିନ୍ତୁ ପ୍ରାତଃଭ୍ରମଣରେ ଯିବେ କଲ୍ୟାଣୀ—ଏକୁଟିଆ ।

ଘରୁ ବାହାରି ଡାହାଣହାତି ଗଳିରେ ସିଧା ଚାଲିଗଲେ ବଡ଼ ସରକାରୀ ସ୍କୁଲ୍‌ହତା ପଡ଼େ, ତା' ସାମ୍‌ନାକୁ ଖେଳପଡ଼ିଆ । ପଡ଼ିଆ ଚାରିପାଖକୁ ସୁନ୍ଦର ବଙ୍ଗଳା ଧାଡ଼ି ଧାଡ଼ି, କୃଷ୍ଣଚୂଡ଼ା ଛାକାରେଣ୍ଡା ଘେରା ସୁନ୍ଦର ପକ୍କା ରାସ୍ତା । ବଡ଼ି ଅନ୍ଧାରରୁ ସେଠି ଦେଖାଯାଆନ୍ତି ପ୍ରାତଃଭ୍ରମଣକାରୀମାନେ । ଜଗିଙ୍ଗ୍ ସୁଟ୍ ସ୍ପୋର୍ଟସ ଜୋତାରେ ହାଲୁକା ଦୌଡ଼ ମାରୁଥିବା ଗୋଟିକିଆ ଯୁବକ, ଯୁବତୀ, କିମ୍ବା ଗୋଟିଏ ଅଧେ ତରୁଣ ଦମ୍ପତି, ବାକି ଅନ୍ୟମାନେ ଧୀର ପାହୁଲ ବୟସ୍କ ଲୋକ, ବେଶୀ ଭାଗ ପୁରୁଷ । ପାର୍ଥଙ୍କ ସାଙ୍ଗରେ ଦିନ କେତେଟା ବୁଲିବା ଭିତରେ ହିଁ ମୁହଁଚିହ୍ନା ହେଇଯାଇଥିଲେ ଅଧିକାଂଶ । ଏଥର ତେଣୁ କଲ୍ୟାଣୀଙ୍କୁ ଏକୁଟିଆ ବୁଲି ବାହାରିବା ସେତେ ବେଶୀ ମାଡ଼ିପଡ଼ିଲା ନାହିଁ । ବରଂ ବଡ଼ିସକାଳୁ ଘରୁ ବାହାରିଲାବେଳକୁ ତାଙ୍କର ମିଶାମିଶି ଭାବଟିଏ ହୁଏ, ଦେହ ପାଖକୁ ଲାଗି କେହି ନାହାନ୍ତି ସଚେତନ ସାବଧାନ ହେଲାଭଳି କିନ୍ତୁ ନିରାପଦ ଲାଗିବା ଭଳି ଅଳ୍ପ ଦୂରରେ ଅଛନ୍ତି ସମସ୍ତେ, ସମଧର୍ମୀ ସମବ୍ୟଥୀ ଲୋକେ । ଅଶିଣ ମାସର ଭୋର୍ ବେଳେ ରାସ୍ତା ସେପାଖ ନିମ୍ବ ଗଛଟି ତା'ର ସବୁଜ ଡାଳପତ୍ର ଆକାର ପ୍ରକାର ନେଇ ସଦ୍ୟ ବାହାରି ଆସୁଥାଏ ହାଲୁକା ରଙ୍ଗମରା ଆକାଶ ଦେହରୁ । ଗଳି ଟପି ସ୍କୁଲର ନାଲି ପାଚେରି କୋଣଠି ପହଞ୍ଚିଲାବେଳକୁ ଠିକ୍ ସେଇ ଚକଚକିଆ ଦୌଡ଼-ଜାମା ପିନ୍ଧା ଯୋଡ଼ିଟି ସାଙ୍ଗରେ ଭେଟ ହୁଏ, ଆଉ କେଇ ହାତ ଆଗକୁ ଯାଉଣୁ ନେଳୀ ଜଙ୍ଘିଆପିନ୍ଧା ଟୋକା ପଛପାଖରୁ ଧାଇଁ ଧାଇଁ ଆସି ଟପି ଚାଲିଯାଏ ଆଗକୁ, ସେ

ଚାଲିଥିଲା । ଯଥାସମ୍ଭବ ମୁଖ୍ୟ ଘଟଣା ସବୁ ସେ ତେଣୁ କହିପକାନ୍ତି, 'ଶୀତ ପଡ଼ିଗଲାଣି ବୋଲି ଏଣିକି ଅଲଗା ଦେଖାଯାଉଚି ସବୁଆଡ଼, ବୁଝିଲ ।' ବା 'ସୁନୀଲବାବୁଙ୍କ ଝିଅ ଏମ୍.ଫିଲ୍. କରୁଚି । ତା' ପାଇଁ ପାତ୍ର ଦେଖୁଚନ୍ତି ସେମାନେ । ଆମ ଗାଙ୍ଗୁଲୀଙ୍କ ପୁଅ ଲାଗି କହିବା କି ?'

କ୍ରମେ ଏକପ୍ରକାର ପାରିବାରିକ ବନ୍ଧୁତା ବି ଆରମ୍ଭ ହେଇଯାଇଥିଲା ସୁନୀଲଙ୍କ ସାଙ୍ଗେ । ସବୁଦିନ ଏକାଠି ଚାଲିବା ସମ୍ଭବ ନ ହେଲେ ବି ଏକା ଜାଗାଠି ଭେଟ ହେଲେ ସେ ପଚାରନ୍ତି—'ଆପଣଙ୍କ ପୁଅ ଯେଉଁ ବିଦେଶର ଇଉନିଭର୍ସିଟିକୁ ସବୁ ଏପ୍ଲାଏ କରିଥିଲା, ତା'ର ଜବାବ୍ ଆସିଲାଣି ?'

ଏତେବେଳକୁ କଲ୍ୟାଣୀଙ୍କର ମନେପଡ଼େ ସୁନୀଲ୍‌ଙ୍କୁ କହିବାକୁ ବି କେତେଟା କଥା ଜମିଗଲାଣି ଏ ଭିତରେ । ତେବେ ଘରେ ଚା' ଖାଇଲାବେଳକୁ ଏଣିକି ଭ୍ରମଣ ବେଳର କଥାସବୁ ଘଷରା ହେଇଯାଇଥାଏ, ବା ପ୍ରତ୍ୟାଶିତ ଉତ୍ତର ମିଳେ ନାହିଁ । ସେ ବଡ଼ ମଜାର କଥାଟାଏ ଆରମ୍ଭ କରନ୍ତି—'ସୀମା କାଲେ ଆଜି ପାହାନ୍ତା ଟ୍ରେନ୍ ଫେଲ୍ କରିଗଲା ବୁଝିଲ, କ'ଣ ହେଲା—' । ଉତ୍ତର ମିଳେ—'କୋଉ ସୀମା ?' ଟିକିଏ ଥଣ୍ଡା ପଡ଼ିଲା ଉତ୍ସାହରେ କଲ୍ୟାଣୀ କହନ୍ତି—'ସୁନୀଲବାବୁଙ୍କ ସ୍ତ୍ରୀ ମ । ତାଙ୍କ କଥା ମୁଁ କେତେଥର ତମକୁ କହିଛି ।' ତାଙ୍କ କଥାଟା ନଶୁଣି ପାର୍ଥ ଓଲଟା ଥଟ୍ଟା କରନ୍ତି—'କ'ଣ ସୁନୀଲ୍ ମିତ୍ର ସାଙ୍ଗରେ ତମର ଭାରି ଗୋଟାଏ ଭାବଦୋସ୍ତି ହୋଇଗଲାଣି ଦେଖୁଛି ।' କଲ୍ୟାଣୀ ମିଛ ବିରକ୍ତିରେ କହନ୍ତି, 'ସେ କଥା ପରେ କହିବି, ଆଗ ଶୁଣ କଥାଟା ।' କିନ୍ତୁ ସେତିକିବେଳେ ଫୋନ୍ ଆସେ ଓ ଟ୍ରେନ୍ ଫେଲ୍ ଉପାଖ୍ୟାନ ଅଧା ରହିଯାଏ ।

ଶୀତଦିନେ ଏତେବେଳକୁ ଭୋରବେଳଟା କୁହୁଡ଼ି ମିଶାମିଶି ହେଇ ଗଡ଼ିଆସିଥାଏ ଦିନ ଭିତରକୁ । ଘଣ୍ଟାକଣ୍ଟା ଦେଖା ସହରର ନିତ୍ୟକର୍ମ ଆରମ୍ଭ ହେଇଯାଇଥାଏ । ସ୍କୁଲ୍ ଡ୍ରେସରେ ପିଲାମାନେ ଦଳ ଦଳ ବାହାରୁଥାନ୍ତି । ସବୁ ବୁଲାଳିମାନଙ୍କର ପୋଷାକପତ୍ର ବଦଳିଥାଏ, ଖାଲି ଖେଳୁଆଡ଼ ଟୋକାଟି ତା'ର ଜଙ୍ଘିଆ ଗେଞ୍ଜିରେ ଦୌଡ଼ୁଥାଏ ଆଉରି ଟିକେ ଜୋର୍‌ରେ ବୋଧେ । କଲ୍ୟାଣୀ ସେଦିନ କହିଲେ—'ଧନ୍ୟ କହିବ ଏ ଚକଚକିଆ ଯୋଡ଼ିକୁ । ତାଙ୍କୁ ଶୀତ ଲାଗୁ ନାଇଁ ନା କଣ ?' ପାଖ ଦେଇ ଚାଲିଯାଉଥିବା ଯୋଡ଼ିକୁ ଫେରି ଅନେଇ ସୁନୀଲ୍ କହିଲେ—'ସେ ଢିଲା ଡ୍ରେସ୍ ତଳେ ଭଲରକମ ଦି'ପ୍ରସ୍ତ ପିନ୍ଧା ହେଇଚି ପରା । କ'ଣ ଭାବୁଛ ତମେ, ଚାଲି ଚାଲି ସେମାନେ ଆହୁରି ମୋଟେଇ ଯାଇଛନ୍ତି ବୋଲି ନା କ'ଣ ?' କଲ୍ୟାଣୀ ବି ଫେରି ଅନେଇଲେ, କହିଲେ—'ଭଲ ଦୃଷ୍ଟି ଆପଣଙ୍କର । ଆପଣଙ୍କୁ କିନ୍ତୁ ଦୂରରୁ ଦେଖି ଆଜି ମୁଁ ଭାବିଲି କିଏ ବଦ୍ରୀନାଥ ଯାତ୍ରୀ ବୋଲି ।'

ଏ ଭିତରେ କେବେ ଦିନେ ସେଇ ରାସ୍ତା ଗଳି ପଡ଼ିଆ ପାଖାପାଖି ଅଞ୍ଚଳରେ ଭ୍ରମଣ ଲାଗି ନୂଆ ପ୍ରକାରର ଗୋଲେଇମାନଙ୍କରେ ଚାଲିବାକୁ ଆରମ୍ଭ କରିଥିଲେ କଲ୍ୟାଣୀ। ସୁନୀଲ୍ ହିଁ ପ୍ରସ୍ତାବ ଦେଉଥିଲେ, ଆଜି ଚାଲନ୍ତୁ ସେ ମନ୍ଦିର ପଛପାଖ ରାସ୍ତାରେ ଯିବା, ଆଜି ସେପାଖ ବଡ଼ ରାସ୍ତା ଆରପାରି ଅଞ୍ଚଳକୁ। ଓ ଗପସପରେ ବି କେତେ ନୂଆ ମୋଡ଼ ଆସିଯାଉଥିଲା—'କଲେଜ ଦିନରେ ମୋର ଭାରି ଗୋଟାଏ ଡ୍ରାମା ସଉକ୍ ଥିଲା ...।' 'ମୋ ସାନ ଭଉଣୀ ମୋଠୁ ବର୍ଷେ ସାନ ଥିଲା, ମୋର ସବୁଠୁ ଭଲ ସାଙ୍ଗ ବି ଥିଲା ସିଏ। ଜାଣନ୍ତି, ପିଲାଦିନୁ ସେ କହୁଥିଲା ବେଶୀଦିନ ବଞ୍ଚିବ ନାହିଁ ବୋଲି।''

ଦିନେ ସୁନୀଲ କହିଲେ—'ଆପଣ ଲୋଦୀ ଗାର୍ଡ଼େନ୍‌କୁ ଯାଇଛନ୍ତି ? ବହୁତ ଲୋକ ଚାଲିବାକୁ ଆସନ୍ତି ସେଠିକି ବି।'

କଲ୍ୟାଣୀ କହିଲେ—'ଯାଇଛି। ହେଲେ ଏଠୁ ତ' ବେଶ୍ ବାଟ ହେବ।'

'କିଏ କହିଲା ? ଅଧ କିଲୋମିଟର ହେବ କି ନାହିଁ। ଚାଲୁନାହାନ୍ତି ଦେଖିବା।'

ପ୍ରକୃତରେ କଲ୍ୟାଣୀ ରାସ୍ତାରୁ ହିଁ ଯାହା ପାର୍କଟାକୁ ଦେଖିଛନ୍ତି ପ୍ରାୟ। ସେଇ ଥରେ ଦି'ଥର ପିକ୍‌ନିକ୍‌ରେ ଯାଇଥିଲେ କ୍ଲବ୍ ତରଫରୁ। ପହଞ୍ଚିଲା ପରେ ଆଶ୍ଚର୍ଯ୍ୟ ହେଲେ। ପାର୍କଟା ଏତେବଡ଼ ବୋଲି ସେ କେବେ ଖିଆଲ୍ କରିନଥିଲେ। ଚାରିପାଖେ କଡ଼େ କଡ଼େ ବଡ଼ ଗଛସବୁ ଥାଇ ରାସ୍ତାରୁ ଭିତରକୁ ସେତେ ଭଲକରି ଦିଶେ ନାହିଁ, ମଝି ମଝିରେ କେତେଟା ପୁରୁଣା ମୋଗଲ ଅମଳର ପଥର କାନ୍ଥବାଡ଼ ସମାଧି ଗମ୍ବୁଜକୁ ଛାଡ଼ିଦେଲେ। ଛୁଟିଦିନ ଭିତରେ ଭଲ ଜାଗା ଦେଖି ଅନ୍ୟ ପିକ୍‌ନିକ୍ ଦଳମାନଙ୍କଠୁ ଦୂରତା ରଖି ବଡ଼ ବଡ଼ ସତରଞ୍ଜି ବିଛାଯାଇଥିଲା। ସେଇଠି ବସି ନାନାରକମ ପାର୍ଟି ଗେମ୍ ଖେଳିଲା ପରେ ବିଭିନ୍ନ ରକମର ଖାଦ୍ୟ ସୁନ୍ଦର କରି ମଝିରେ ବଢ଼ାଯାଇଥିଲା ଓ ସମସ୍ତେ ସୁଚାରୁରୂପେ ଖିଆପିଆ କରି ଫ୍ଲାସ୍କମାନଙ୍କରୁ ଗରମ କଫି ପିଇ ନିଜ ନିଜ ଗାଡ଼ିରେ ବାହୁଡ଼ି ଯାଇଥିଲେ। ଆଜି କଲ୍ୟାଣୀ ପହଞ୍ଚିଲାକ୍ଷଣି ଉଚ୍ଛାଟରେ କହିଲେ—'କେଡ଼େ ଚମତ୍କାର ଜାଗା ! ଭଲକରି ଦେଖିବି ମୁଁ ଆଜି ପାର୍କଟା।' ହେଲେ ଗୋଟିଏ ଅଂଶ ବି ଭଲକରି ବୁଲି ହେଲା ନାହିଁ।

ସେଦିନ ବୁଲାରୁ ଫେରି, ପାର୍ଥଙ୍କୁ ପାର୍କ ବିଷୟରେ ସବିଶେଷ ବିବରଣୀ ଶୁଣାଇଲେ କଲ୍ୟାଣୀ। ପାର୍ଥ ଅବଶ୍ୟ ଖବରକାଗଜରୁ ମୁହଁ ଉଠାଇ ବାଁ ହାତରେ ଚଷମା ନାକ ଆଗକୁ ଖସାଇ ତାଙ୍କ କଥା ଶୁଣିଲେ, କିନ୍ତୁ ପୁଅ ବହେ ହସିଲା, ଭଉଣୀକୁ ଡାକି କହିଲା—'ମାମୁନ୍, ଶୁଣିବୁ ଆ। ଏଇ ରାସ୍ତା ସେପାଖ ପାର୍କରୁ

ଘେରାଏ ବୁଲିଆସି ମା' ଏମିତି କହୁଛି ସତେକି ଆଣ୍ଟାର୍କଟିକା ଏକ୍ସପେଡ଼ିସନ୍‌ରୁ ଫେରିଛି ସଦ୍ୟ ।'

ତା' ପରଦିନ ପାର୍କ ଭିତରେ ଅଙ୍କେଇ ବଙ୍କେଇ ଯାଇଥିବା ପାଦଚଲା ରାସ୍ତାମାନଙ୍କରେ ଯେତେ ଯେତେ ଅପୂର୍ବ ଦୃଶ୍ୟ ଦେଖିଲେ କଲ୍ୟାଣୀ, ବୁଝିଲେ ଏସବୁ କିଛି ଆଉ ଘରେ କହିହେବ ନାହିଁ । ସୁନୀଲଙ୍କୁ କହିଲେ—'ଭାବିଛି ଦିନେ ଏ ବାପ ପୁଅଝିଅ ତିହ୍ନିଙ୍କୁ ଟାଣି ଟାଣି ଆଣିବି ସାଙ୍ଗରେ, ବଡ଼ି ପାହାନ୍ତାରୁ, ତେବେ ଜାଣିବେ ମା' କ'ଣ କହୁଥିଲା ।'

ହେଲେ ଛୁଟିଦିନ ସକାଳୁ ରେଜେଇ ଭିତରୁ ମୁଣ୍ଡ ସୁଦ୍ଧା କାଢ଼ିଲେନି କେହି ତାଙ୍କ ଡାକରା ଶୁଣି । ଝିଅ କହିଲା ସମବେଦନାରେ—'ତମେ ବି ଆଜି ଦିନକ ଶୋଇପଡୁନା, ମଝି ମଝିରେ ଛୁଟି ନେବା ଦରକାର ନା ନାଇଁ ।'

କଲ୍ୟାଣୀ ହସିଦେଲେ ଆହୁରି ସମବେଦନାରେ, କହିଲେ—''ଅଳସୁଆ ଯେତେକ ।'' ଆଉ ଭାବିଲେ, ଯିବିନି କେମିତି । ଆଜିକ ନ ଗଲେ କେତେ କ'ଣ ଘଟିଯିବ, ହାତରୁ ଚାଲିଯିବ । ସୁନୀଲ୍ ଏକୁଟିଆ ଚାଲିବେ ।

ମୋଡ଼ଠି ପହଞ୍ଚିଲା ବେଳକୁ ସେଦିନ କିନ୍ତୁ ସୁନୀଲ୍ ନଥିଲେ, ପାର୍କରେ ପହଞ୍ଚିଲା ପରେ ବି ନୁହେଁ । ସୁନ୍ଦର ତିଆରି ପାଦଚଲା ରାସ୍ତାମାନଙ୍କରେ ଏକୁଟିଆ ଜୋର୍‌ରେ ପାଦ ପକାଇଲେ କଲ୍ୟାଣୀ । ଶୀତ କମି ଆସିଥିଲା ଏଥର । ଉଠାଣି ଗଡ଼ାଣି ରାସ୍ତାରେ ଘାସ ପଡ଼ିଆମାନଙ୍କରେ ଗଛ ଭିତର ଦେଇ ନରମ ଖରା ପଡ଼ିଥିଲା । ପାଚିଲା ନିମ୍ବପତ୍ର ସବୁ ହାଲୁକା ହାଲୁକା ପବନରେ ଝରୁଥିଲା ବର୍ଷା ପରି । ବୁଦାମାନଙ୍କର ନଣ୍ଡାଡାଳରେ ଟିକି ଟିକି ସବୁଜ କଢ଼ ସବୁ ଉଙ୍କି ଆସୁଥିଲା । ଚାଲୁଚାଲୁ ବାଁ ପାଖରେ କେଉଁ ଯୁଗର ଅଧା ଭୁଶୁଡ଼ି ପଡ଼ିଥିବା ବିରାଟ ମୋଟା କାନ୍ଥ କୋଠାଟି, ସତେକି ତା' ସମୟର ଲୋକେ ମରିହଜି ଯାଇନାହାନ୍ତି ମୋଟରୁ, ସେ ଏମିତି ରୂପ ନେଇଅଛି ପ୍ରକୃତରେ, ଏ ଚାରିପାଖ ଛବିର ଅଂଶଟିଏ । ବଦଳି ଯାଇଥିବା ଋତୁର ଜୀବନ୍ୟାସ ସବୁଠି । ସେ ସାନ ଶାଗୁଆ-ମାଟିଆ ଚଢ଼େଇଟି ଗଛ କୋରଡ଼ ଭିତରେ କ'ଣ ଖୋଜି ପୁଣି ବାହାରି ଆସୁଛି ପଦାକୁ । କ'ଣ ଖୋଜୁଚି ? କ'ଣ ଖୋଜୁଚି କଲ୍ୟାଣୀ ନିଜେ ? କେମିତି ଏ ନୂଆ ପୃଥିବୀଟିଏ ଫିଟି ଫିଟି ଯାଉଚି କ୍ରମେ । ହାଲ୍‌କା ଶୀତ ସକାଳ ଭିତରେ ନୁହେଁ, ନିଜ ଭିତରେ ବି ? କଲ୍ୟାଣୀ ଜୋର୍‌କରି ଘର କଥା ମନେ ପକେଇଲେ, ଏଯାଏଁ କାଟି ଆସିଥିବା ଜୀବନର କଥା । ଏମିତି ଖୋଜିଲା ଖୋଜିଲା ଭାବଟିଏ ଥିଲା କେବେ ହଁ, ମନେପଡୁଚି, କାହିଁ ସେ କୋଉ ଯୁଗ ତଳେ ଆଖି ପାଉନି । ତଥାପି ପାଖ ପରି ଲାଗୁଚି, ଏଇ ସେଦିନ ପରି । ଏମିତି ଖୋଜିଲା ଭାବ, ସବୁଠି କିଛି-ନା-କିଛି ପାଇବାକୁ ଥିବାର

ଉଚ୍ଚାଟ । ତା'ପରେ କ'ଣ ହେଲା ତା'ର ? ତା ଉପରେ ମାଟି ଚପେଇ ଦିଆଯାଇ ଇଟା ପଥରର ଘର ସଂସାର ତିଆରି ହେଲା । ତା'ପରେ ଚାଲିଲା ଦିନ, ଯାହା ଯେମିତି ମିଳିବାର କଥା ମିଳିଯାଇଥିବାର, କଣ୍ଟାଝଟା ଆଡ଼େଇ ଆଡ଼େଇ ବାଟ ଚାଲିବାର ଦିନ ଚାଲିଥିଲା । ସେଥିରେ ବି ତ ସନ୍ତୋଷ ଥିଲା, ଗଭୀର ଆପତ୍ତି କେବେହେଁ ନଥିଲା ତ କାହିଁ । ଏତେ ଅଭାବ ଥିଲା କୋଉଠି ତେବେ, ଆଉରି ଏତେ କିଛି ପାଇବାକୁ ? ଆଖ ପାଖ ସଭିଙ୍କୁ ଦର୍ପଣ ଭଳି ଦେଖି ଦେଖି, ନିଜ ନୀଡ଼ଟିକି ସଜାଡ଼ି ସଜାଡ଼ି ଚାଲିଆସିଚି ସେ ଆଜିଯାକେ । ସାଙ୍ଗରେ ମିଶି ଦିନ କାଟିବାକୁ, ସାହସ, ବଳ ଦେବାକୁ ସମସ୍ତେ, ସବୁକିଛି । ତଥାପି ଏତେ ଖାଲି ଜାଗା ଥିଲା କୋଉଠି, ଏତେ ଖୋଜିବା ଏତେ ପାଇବା ?

ଥକିଯାଇ ଗଛ ପାଖ କାଠ ବେଞ୍ଚରେ ଟିକିଏ ସେ ବସିପଡ଼ିଲେ । ଝରଣା ପରି ପାଣି ଅଜାଡ଼ି ପଡୁଚି ଯେଉଁଠି ଗୋଟିଏ ସାନ ପଥୁରିଆ ନାଳକୁ, ଘାସ ଉପର ପାଣି ଚବ୍‌କାଟିରେ ଚଢ଼େଇଟିଏ ପର ମେଲେଇ ପେଟେଇ ବୁଡ଼ି ବୁଡ଼ି ଗାଧୋଇ ପଡୁଥିଲା, ପୁଣି ଫୁର୍‌ଫୁର୍ ଡେଣା ଝାଡ଼ିଦେଇ ପର ଫୁଲେଇ ଦେଇ ଛୋଟ ଗୋଲ୍ ବଲ୍‌ଟିଏ ବନିଗଲା ଆଉ ଖରା ପୋଇଁ ହେଲା । ଚାରିଆଡ଼େ ବିଛେଇ ହେଇଥିବା ସକାଳର ଏକୀଭୂତ ଏକାଗ୍ର ବିନ୍ଦୁଟିଏ ସେ । କଲ୍ୟାଣୀଙ୍କୁ ଲାଗିଲା, ସତେକି ଅବିକଳ ସେ ନିଜେ ।

ଆଖପାଖରେ, ଦୂରରେ ଚାଲୁଚନ୍ତି ଅନେକ ଲୋକ । ମଝି ମଝିରେ ସେଇମାନଙ୍କ ଆଡ଼େ ତା'ର ଦୃଷ୍ଟି ଚାଲିଯାଉଥିଲା, ଆସିଲାବେଳୁ । ଆଉ ପୁଣି ସେ ନିଜକୁ ପ୍ରଶ୍ନ ପଚାରିଲା, କେମିତି ଦୂରରେ ଚାଲୁଥିବା ଅଚିହ୍ନା ଲୋକଟିଏ ପାଖେଇ ବି ଆସିପାରେ ଓ ନୂଆ ପୃଥିବୀଟିଏ ଫିଟିଫିଟି ଯାଇପାରେ ତା' ଭିତରକୁ ?

କଲ୍ୟାଣୀ ସବୁଦିନ ଭଳି ଫେରିଲେ ଘରକୁ ଓ ଦିନଟି ଆଗେଇଲା ଯଥାବତ୍ । ସଞ୍ଜବେଳେ ପୁରୁଣା ବନ୍ଧୁ ଦମ୍ପତି ବୁଲିଆସିଲେ, ଅନେକ ଦିନ ପରେ ସ୍ମୃତି କିଛି ଓଲଟାଗଲା ହସ ଖୁସି ଗପ ଭିତରେ । କୁନି ଝିଅ ସେଥର କେମିତି ଅଧରାତିରେ ଅସୁସ୍ଥ ହେଇପଡ଼ିଥିଲା, ପାର୍ଥ ନଥିଲେ ଘରେ, ଏଇ ବନ୍ଧୁ ପରିବାରଟି ପଡ଼ିଶାରେ ରହୁଥିଲେ ବୋଲି ସାଙ୍ଗରେ ନେଇ ଡାକ୍ତର ପାଖକୁ ଯାଇଥିଲେ ସେଇ ରାତି ଅଧରେ । ଆଉ ଥରେ କାର୍‌ରେ ଏକାଠି ଖଜୁରାହୋ ବୁଲିଯାଇଥିଲା ବେଳେ ବାଟରେ ଗାଡ଼ି ଖରାପ ହେଇଯାଇଥିଲା, ସାଙ୍ଗରେ ଟିକି ପିଲାଙ୍କୁ ନେଇ ବର୍ଷା ରାତିରେ ଲେବେଲ୍ କ୍ରସିଂର ଚଉକିଦାରର ବଖୁରିଟିରେ ରାତିସାରା କଟାଇଥିଲେ ସେମାନେ । କେତେ ସ୍ମୃତି ଏକାଠି, ସମୟରେ ଦୂରେଇ ଯାଇ ମଧୁର ମନୋହର ପାଲଟିଛି ।

ସେମାନେ ଗଲା ପରେ ବି ମଧୁର ଭାବଟି ଛାଇଥିଲା ଘରେ । ଏମିତି କେତେ ବନ୍ଧୁବାନ୍ଧବଙ୍କ ସାଙ୍ଗରେ ଦିନସବୁ, ଘଟଣା ଦୁର୍ଘଟଣା ସବୁ ଏକାଠି ଭୋଗିବା ହେଇଛି, ଭାଗବଣ୍ଟା ହେଇଛି ପରିବାରର ସୁଖଦୁଃଖ । କଲ୍ୟାଣୀଙ୍କ ପରିବାର, ବୃତ୍ତ ଭିତରର ଯୁଗ୍ମ ଜୀବନ । ଏକାକୀ କଲ୍ୟାଣୀଟିଏ କେବଳ ବଞ୍ଚିଥିଲା କି କେବେ ତା'ଭିତରେ ? କଲ୍ୟାଣୀ ପ୍ରଶ୍ନ କରୁଥିଲା ନିଜକୁ, ଏକକ ଭାବେ ନିଜ ଭିତରେ ଅନୁଭବ କରିଥିଲା କି କେବେ ସେ ଜୀବନକୁ, ସ୍ୱଇଚ୍ଛାରେ ହାତ ବଢ଼ାଇ କରିଥିଲା ବନ୍ଧୁଟିଏ ? ସମୟ କିଛି ବିତାଇଥିଲା ନିଜେ ନିଜ ଲାଗି ? ସେଇ ପିଲାଦିନ ପରେ ଯେତେବେଳେ ଫୁଲପକା ଫ୍ରକ୍‌ଟିଏ ପିନ୍ଧି ସେ ନିଜ ମୁଣ୍ଡଠୁଁ ଉଚ୍ଚ ଗଛମାନଙ୍କ ଭିତରେ ବୁଲୁଥିଲା କଅଁଳ ପତ୍ର ଫୁଲମାନଙ୍କ ଭିତରେ ଆକତା ମାକତା ହେଇ ? କେଉଁ ଷ୍ଟେସନର ୱେଟିଂ ରୁମ୍‌ରେ ଯେତେବେଳେ ସେ ଅଚିହ୍ନା ପିଲାଟିଏ ପାଖକୁ ଆପେ ଚାଲିଯାଇ ନିଜ କଣ୍ଢେଇଟି ଯାଚିଥିଲା, କହିଥିଲା ଆ' ଖେଳିବା ବୋଲି ? ତା'ପରେ କେଉଁଠି ଶୋଇପଡ଼ିଲା ସେ ଟିକି ଟୁରୁଟୁରିଆ ଝିଅଟି ?

କଲ୍ୟାଣୀ ଏତେଗୁଡ଼ାଏ ପ୍ରଶ୍ନ ନିଜକୁ କରୁଥିଲା, କାରଣ ତା'ର ଗୋଟାଏ ରକମର ଭୟ ହେଉଥିଲା ସେ ଦୂରେଇ ଯାଉଚି କ୍ରମେ ତା' ପରିଚିତ ପ୍ରିୟ ସଂସାରରୁ । କିଛି ସମୟ ଲାଗି ପୂରା ଭୁଲିଯାଇପାରୁଚି ତା ଉଷୁମ ଖୋସାଭଳି ଗୋଲକକୁ, ଘରେ ଥିଲାବେଳେ ଏକଥା ଭାବି ତାକୁ ଦୋଷୀ ଲାଗୁଥିଲା । ଉଦାସ କରିଦେଉଥିଲା ଏଇ ଚିନ୍ତାଟି ଯେ ଆଗ ଭଳି ପାର୍ଥଙ୍କ ଆଗରେ ଅନର୍ଗଳ ଗପିଯାଉ ନଥିଲା ସେ ଯେତେବେଳେ ଯାହା ମନକୁ ଆସିଲା । ଲାଗୁଥିଲା ଏସବୁ ନ କହିଲେ ବି ଚଳିବ । ପାର୍ଥଙ୍କୁ ତ ଜଣା ବି ପଡ଼ିବନି । ଫରକ୍ ବି ପଡ଼ିବନି କିଛି । ତାକୁ ଅନେକ ସମୟରେ ଅପ୍ରସ୍ତୁତ ବି କରୁଥିଲା ପାର୍ଥଙ୍କ ପ୍ରତିକ୍ରିୟା—'ଏକଥା କିଏ ପୁଣି ତମକୁ କହିଲା । ସୁନୀଲ୍ ମିତ୍ର ?' ବା 'ମୋତେ କହିନା ତ କାହିଁ ଆଗରୁ । ଆଉ କାହାକୁ କହିଥିବ ବୋଧେ, ଭୁଲିଯାଉଚ ।'

ଭୋର୍‌ବେଳେ ସାଙ୍ଗରେ ସୁନୀଲ ଥିଲେ ବି ଦୂର ପଡୁଥିବାରୁ ସବୁଦିନେ ପାର୍କକୁ ଯିବା ସମ୍ଭବ ହେଉ ନଥିଲା । ସମୟ ଥାଉଣୁ ଘରକୁ ଫେରି ହେଉ ନଥିଲା । ଦି'ପହରେ ସବୁ ଘରକାମ ସାରି ଘରେ ତାଲା ଦେଇ ଯିବାକୁ ବେଶୀ ସୁବିଧା ହୁଏ ବରଂ । ହାଲୁକା ଶୀତର ଖରା ପବନରେ ପ୍ରତିଦିନ ଟିକିଏ ଲେଖାଁ ନୂଆ ରଙ୍ଗ ଲାଗୁଥିବା ଗଛବୃକ୍ଷ ସବୁ ଅଲଗା ଦେଖାଯାଆନ୍ତି । ଝଙ୍କାଳିଆ ଗଛମାନଙ୍କ ସେପାଖେ ରାସ୍ତା ଘରଦ୍ୱାରର ଅବସ୍ଥିତି ଯେ ବାରି ନହୁଏ ତା' ନୁହେଁ, ତଥାପି ଉହାଡ଼ ହେଇଯାଏ, ଅସ୍ପଷ୍ଟ ହେଇଯାଏ ବାହାର ଦୁନିଆଟି, ତା'ର ଓଜନ ଏତେ ବୋଲି ଆଉ ପରତେ ହୁଏନାହିଁ । କଳା ଦେହରେ ମନ୍ଦାଏ ନାଲିରଙ୍ଗ ନେଇ ଡେଇଁ ବୁଲୁଥିବା ଚଢ଼େଇଟି, ସ୍ଥୂଳ ବାଟରୁ ଖସିଆସି ପାଣି

ଚବର ଚବର କରି ଖେଳୁଥିବା ପିଲାଏ, ସାମ୍ନାରେ ଘଟୁଥିବା ପ୍ରତିଟି ଘଟଣା ସଂପୂର୍ଣ୍ଣ କରିଦିଏ ବର୍ତ୍ତମାନକୁ । କୌଣସିଟି ଇତର ନୁହେଁ ମନଭରି ଦେଖିବା ଲାଗି, ମୁହୂର୍ତ୍ତଟିକୁ ଭରିଦେବା ଲାଗି । କୌଣସି କଥା ବି ଅବାନ୍ତର କି ବାଜେ ନୁହେଁ ସୁନୀଲଙ୍କୁ କହିବା ଲାଗି ବା ତାଙ୍କଠୁ ଶୁଣିବା ଲାଗି । ଥରେ ଥରେ କାଠ ବେଞ୍ଚରେ ପାଖରେ ବସିଥିବା ସୁନୀଲ୍‌ଙ୍କୁ ଅନେଇ କଲ୍ୟାଣୀ ଭାବନ୍ତି, କେମିତି ଜୀବନ ଠିକ୍ ଜୀଇଁଥିଲା ଏ ଆଜିଯାକେ ? କିଏ ସବୁ ଭାଗ ବାଣ୍ଟି ଆସିଥିଲେ ତା' ସୁଖ ଦୁଃଖରେ ? କିପରି ଧଳା କଳା ଧୂସର କୋଣମାନ ଲୁଚି ରହିଥିବ ଏ ଲୋକଟି ଭିତରେ ଯାହା ମୋର ଅବଗତ ନୁହେଁ ? ଏତେବେଳକୁ ପିଠିରେ ବସ୍ତାନି ବୋହି ପାଣି ଖେଳୁଥିବା ପିଲାଏ, ସିମେଣ୍ଟ ଝରଣାରୁ ଦଳ ସଫା କରୁଥିବା କର୍ମଚାରୀଟିକୁ ନିର୍ଭୟରେ ପଚାରୁଥାନ୍ତି, 'ଅଙ୍କଲ୍‌ଜୀ, ଏଠି ସାନ ସାନ ମାଛ ଅଛନ୍ତି, ତମ ଝାଡୁରେ ମରିଯିବେନି ?' ଓ ଅଙ୍କଲ୍‌ଜୀ ବୟସ୍କ ଲୋକର ଅଭିଭାବକପଣିଆ ମୁଖା ନପିନ୍ଧି ମାଛମାନଙ୍କ ଘର, ବଗିଚା ବିଷୟରେ ସେମାନଙ୍କୁ ତଥ୍ୟ ଯୋଗାଉଥାଏ । ସୁନୀଲ୍‌ର ଅପର ଘର ସଂସାର କଥା ବି ଅବାନ୍ତର ହେଇଯାଏ ।

ଭୟ ହୁଏ ଯେତେବେଳେ ଫେରନ୍ତା ପାଦ ପଡ଼ିଲାକ୍ଷଣି ଓଜନିଆ ହେଇ ସାମ୍ନାରେ ଉଭା ହୁଏ ଘର । କଲ୍ୟାଣୀ କାମ ତଦାରଖ, ରୋଷେଇବାସ, ବନ୍ଧୁ ସଙ୍ଗୁଳାରେ ଲାଗିଯାଆନ୍ତି । ଆଉ କିଛି ମୁଣ୍ଡରେ ପୂରାନ୍ତି ନାହିଁ । ଭୟ ହୁଏ । କ୍ରମେ ଏ ଜୀବନଟି ଯେମିତି ଅଦ୍ଭୁତ ଅବାନ୍ତର ହେଇଯାଉଚି । ଅସତ୍ୟ ହେଇଯାଉଚି । ଓ ସେଇଥିଲାଗି ବି ବେଳେବେଳେ ଅସହ୍ୟ ।

କେବେଠୁଁ ଆରମ୍ଭ ହେଲା ଅନୁଭୂତ ଜୀବନଟି ଏମିତି ଦ୍ୱିଖଣ୍ଡ ହେଇଯିବାର ? ଯେଉଁଦିନୁ ସେ ଘରେ ତାଲା ପକାଇ ପାର୍କକୁ ଯାଇଥିବା କଥା ଆଉ ପାର୍ଥଙ୍କୁ କହିଲେ ନାହିଁ ? ଯେଉଁଦିନ ସାରା ମନଟା ତାଙ୍କର ଗୋଳେଇ ପୋଳେଇ ହେଉଥିଲା କହିବାକୁ ସେ ଘଟଣାଟା, ଯେ କେଉଁ ନର୍ସରୀ ସ୍କୁଲର ଟିକିଟିକି ଛୁଆଦଳଙ୍କୁ ପିଅନ ଜିମା ଛାଡ଼ିଦେଇ ମାଷ୍ଟ୍ରାଣୀ ପଞ୍ଚାକ ଗପୁଥିଲେ ଓ ଛୁଆଟିଏ ନାଳ ଭିତରେ ପଡ଼ିଯାଇ ପାଣି ପିଇ ପକେଇଥିଲା । ପୁଣି ଦିନେ ଦାଣ୍ଡରୁ ପୁଅ ମସଲାମୁଢ଼ି କିଣିଆଣି ଖାଇଲାବେଳେ ସେ କହିପାରିଲେ ନାହିଁ ଯେ ସେଗୁଡ଼ା ଫୋପାଡ଼ିଦେ, ଆଜି ମୁଁ ଦେଖିଚି ବିକାଳିଟିଏର ମୁଢ଼ି ଚଣା ସବୁଯାକ ପାର୍କର ପଥର ଚଟାଣରେ ବୁଣିଯାଇଥିଲା ଆଉ ସେ ସାଉଁଟି ଠୁଙ୍ଗାରେ ପୂରାଉଥିଲା । ଗତକାଲି ଡ୍ରାମା ଦେଖି ଉତ୍‌ଫୁଲ୍ଲ ମନରେ ଫେରିଲାବେଳେ ଓଠ ପାଖରେ ତାଙ୍କୁ ରୋକିଦେବାକୁ ପଡ଼ିଲା ଯେ, ଜାଣ ସୁନୀଲ୍‌ଙ୍କ ଜୀବନର କେତେଟା ଘଟଣା ବି ଅବିକଳ ଏଇ ଡ୍ରାମାର ଗପ ସାଙ୍ଗେ ମିଶିଯାଉଚି । ସେ କହିଲେ ନାହିଁ କାରଣ ମୁହଁରୁ ବାହାରିଲାକ୍ଷଣି ସତ ମିଛ ହାଲୁକା ଭାରୀ ସବୁ ଗୋଳିଆମିଶା

ହେଇଯିବ । କହିବାର ବାଟ ସବୁ ବନ୍ଦ ହୋଇଗଲାଣି ଯେବେଠୁ ସେ ଦେଖିଛନ୍ତି ଓଠରୁ ଖସିଲାମାତ୍ରେ ହିଁ ବିକୃତ, ହାସ୍ୟାସ୍ପଦ ହେଇଯାଏ ସେ କୁହୁକ ରାଜ୍ୟ କଥା ।

ସେଇଠୁ ଯେତେବେଳେ ସେତେବେଳେ, ଦର୍ପଣ ଆଗରେ ରୋଷେଇ ଘରେ, ସାଗ ମେଳରେ, ବିଛଣା ଉପରେ, ମାଡ଼ିପଡ଼େ କେମିତି ଗୋଟାଏ ଭୟ । ହାତମୁଠା ଭିତରେ ଏଯାଏଁ ରହିଥିବା ନିଦା ସଂସାରଟା ଭେଳିକି ଲାଗିଲା ଭଳି ଉଡ଼ିଯାଉଚି, ମେଘୁଆ କୁହୁଡ଼ିଆ ହେଇ ଗଳିଯାଉଚି ଆଙ୍ଗୁଠି ଫାଙ୍କବାଟେ । ସମାନ୍ତରାଳ ଦୁଇଟି ପୃଥିବୀରେ ବଞ୍ଚୁଚି ସେ ଏବେ । ନା, ତା' ବି ନୁହେଁ । ନିଜର ବୋଲି ଏତେଦିନ ଜାଣିଥିବା ପୃଥିବୀରେ ମରିଯାଉଚି ସେ କ୍ରମେ, ଝିଅର ବିଜ୍ଞାନ ବହିରେ ପଢ଼ା ନଭମଣ୍ଡଳର ତାରାଟିଏ ଭଳି ।

ବିଛଣାରେ ରାତିରେ ଚେଇଁରହି କଲ୍ୟାଣୀ ନିଜକୁ ଖୋଲାଖୋଲି ପଚାରେ, ନିୟମ ଭଙ୍ଗାଯାଉଚି, 'ଜାଣୁ ?' ଓ ଉତ୍ତର ଶୁଭେ—'ଜାଣେ' । 'ଏମିତି କେତେଦିନ ?' ଜବାବ୍ ମିଳେ, 'ଜାଣିନି ।' ତା'ପରେ ହୁଏତ ହତାଶିଆ ଭାବଟିଏ ଆସେ, ଅତୁଆଟତୁଆ କିଛି ଗୋଟାଏ ଘଟିଯିବ କି ଏବେ ସମ୍ଭାଳି ହେବ ନାଇଁ । ଆଉ ନୁହେଁ ଏଣିକି, ଯେତିକି ଯାହା ହେଲା ହେଲା । ନିଦ ଆସେନାଇଁ ଅନେକ ବେଳଯାଏଁ । ପାଖରେ ନିଶ୍ଚଳ ଶୋଇଥାନ୍ତି ପାର୍ଥ । ଲମ୍ବା ନିଶ୍ୱାସ ବାରି ହେଉଥାଏ । ଦେବଦେବୀମାନଙ୍କୁ ଆତୁରରେ ଡାକେ କଲ୍ୟାଣୀ, କୋଉଠି ବୋଧେ କିଛି ଗୋଟାଏ ଭୁଲ୍‌ଭାଲ୍ ହେଇଯାଉଚି, ମୁଁ ଜାଣିପାରୁନି । ଓ ଆଉରି ପଚାରେ ଦେବଦେବୀମାନଙ୍କୁ, ହେଲେ କାହିଁକି ମୋତେ ନିରନ୍ତର ଲାଗୁଚି ଏଇ ଟିକକ ମୋର ଦିନତମାମ୍ ଅନୁଭବର ଚିପୁଡ଼ା ସାର୍ଥକତା ବୋଲି ? ଏଇତକ ମୋର ପ୍ରାପ୍ୟ । ଏତିକିର ସମ୍ଭାବନା କେମିତି ତେବେ ରହିଥିଲା ମୋ ଭିତରେ ?

କେତେବେଳକେ ଗୋଟାଏ ନିଶ୍ଚିନ୍ତତା ଛାଇଯାଏ ଓ ନିଦରେ ଆଖିପତା ଲାଗିଆସେ । ଲାଗେ, କିଛି ବିଶେଷ ଯାଏଆସେ ନାଇଁ । କାଲି ସକାଳ ଆସୁଚି, ଆଉସବୁ ଅବାନ୍ତର । ବହୁତ ବେଶୀ ଦୁଃଖ ଦେବାର କ୍ଷମତା ଆଉ ଏ ପୃଥିବୀ ରଖିନାଇଁ ତା' ପାଖେ । ଆଘାତ ଦେଇପାରିବା ଭଳି ସବୁ ଆୟୁଧର ବିଷ ଧୋଇଗଲାଣି ଏ ଭିତରେ । ଏ ସବୁକିଛି କେବଳ ସୁନ୍ଦର ଭାବେ ତିଆରି ହେଇଥିବା ଡ୍ରାମାଟିଏ, ଗପଟିଏ, ଚଳଚ୍ଚିତ୍ରଟିଏ, ଯହିଁରେ ସାମିଲ୍ ମୁଁ ନିଜେ । ଏସବୁ ମୋତେ ଜଡ଼େଇ ଧରି ରଖିପାରିବ ହୁଏତ; ଆନନ୍ଦ ଦେଇପାରିବ, ନଚେତ୍ ଅନ୍ୟମନସ୍କତା । ତା'ଠୁ ବେଶୀ କିଛି ନୁହେଁ ।

ଶେଷତଃ କଲ୍ୟାଣୀଙ୍କ ଓଠକୁ ହସ ଆସେ ଓ ସେ କହନ୍ତି ନିଜକୁ, ଦ୍ୱୀପାନ୍ତର ନିଶ୍ଚୟ ଏ । କ'ଣ ଆଉ କୁହାଯିବ ଏ ଦେଶାନ୍ତରୀ ହେବାର ଅନୁଭବକୁ ? ଖାଲି ଗୋଟିଏ ପ୍ରଶ୍ନର ଉତ୍ତର ଯାହା ମୋତେ ମିଳୁନାଇଁ, ତଥାପି ଗୋଳମାଳିଆ କରି ଦେଉଚି ମୋ' ମନକୁ, ଯେ କେଉଁଟି ମୋ' ନିଜ ଦେଶ, କେଉଁଟି ଦ୍ୱୀପାନ୍ତର ?

❑❑❑

# ଭିତରର ଛବି

ଅମିତା କାଲିର ଅଧାଲେଖା ଚିଠିଟା ପୂରା କରିଦେବ ବୋଲି ଧାଡ଼ିଟିଏ ଲେଖୁଚି କି ନାହିଁ, କବାଟ ପାଖେ ପୁଣି ଦିଶିଲା କିଏ । ନର୍ସ ତାଙ୍କ ମୁହଁକୁ ଅନେଇ ଅପେକ୍ଷା କରୁଥିଲା ତାଙ୍କ ପ୍ରଶ୍ନକୁ, ମୁହଁରେ ମୁରୁକି ହସ ।

''କ'ଣ ରେଡି ହେଇଗଲା ପେସେଣ୍ଟ୍ ?''

ନର୍ସ ମୁହଁରେ ଏଥର ହସ ଫୁଟି ପଡ଼ିଲା । ''ମାଡାମ୍, ସିଏ ନିଜେ ଆଗ ତିଆରି ହେଲେ ସିନା ? ତାଙ୍କ ସ୍ୱାମୀ-ସ୍ତ୍ରୀଙ୍କ ଝଗଡ଼ାଝାଟି ତ ଚାଲିଛି, ମେଣ୍ଟିଲେ ଯାଇ ସିନା—''

ଅମିତା ତା' ହସର ଉତ୍ତର ନଦେଇ ପେନ୍ ଉଠେଇଲା, କାଗଜକୁ ଅନେଇ କହିଲା—''ଯାଅ, ଦେଖ ତେବେ, ରେଡି କରିସାରି ମୋତେ କହିବ ।'' ନର୍ସ ଟିକିଏ ଦୋଦୋପାଞ୍ଚ ହୋଇ ଫେରିଗଲା, ତା'ର ଆହୁରି ଟିକିଏ ଗପିବାକୁ ମନ ଥିଲା ।

ଛୋଟିଆ ଡାକ୍ତରଖାନାର ଏକମାତ୍ର ଡାକ୍ତରାଣୀ ଅମିତା, ଆଉ ଡାକ୍ତର ଜଣକ ଛୁଟିରେ ଗଲେ ଏକମାତ୍ର ହିଁ ଡାକ୍ତର । ଆଖପାଖ ବସ୍ତି ଗାଆଁଗଣ୍ଡାର ଲୋକେ ଚିକିତ୍ସା ପାଇଁ ଆସିଲେ ଡାକ୍ତର ପାଖକୁ ଆଣନ୍ତି ରୋଗ ସାଙ୍ଗରେ ତାଙ୍କ ବଇରାଗ, ପରିବାରର କେତେ ରକମର ସମସ୍ୟା । ଡାକ୍ତରଖାନାର ଷ୍ଟାଫ ବି ସମୟ କାଟିବାଲାଗି ଖୋରାକ ବାହାର କରିନିଅନ୍ତି ତହିଁରୁ । ଅମିତା ସେଥିରୁ ଅଲଗା ନଥିଲା କେବେ, ଏଠିକି ଦି' ତିନି ବର୍ଷ ହେଲା ଆସିବା ଦିନୁ । ସତ କହିବାକୁ ଗଲେ, ନୂଆ ନୂଆ ଏଠିକି ଆସି ପହଞ୍ଚିଲା ବେଳେ, ସେ ବୁଝି ହିଁ ପାରୁନଥିଲା ଯେ ଡାକ୍ତରଖାନା ଓ ରୋଗୀଙ୍କୁ ନେଇ ସମୟ ବି ଅନାୟାସରେ କଟି ଯାଇପାରେ ବୋଲି । ସେଯାଏଁ ରୋହିତ ସଙ୍ଗେ ତା'ର ପରିଚୟ ହୋଇନଥିଲା । ନିଜ ଅସଲ ଜୀବନ, ଘରସଂସାର କଥା ଆଡ଼େଇ ଦେଇ ଏକ ସାମୟିକ ସ୍ୱୟଂସମ୍ପୂର୍ଣ୍ଣ ଜୀବନ ବିତେଇ ହୁଏ ବୋଲି ସେ ଏକପ୍ରକାର ଆବିଷ୍କାର କଲା ଅଚାନକ, ସେତେବେଳେ ।

ଅଧାଲେଖା ବାକ୍ୟଟିଏ ସେ ଗାରେଇଦେଇ କାଟିପକାଇଲା । ଥାଉ ଏବେ ରୋହିତ କଥା । ଚିଠିଟା ଆଗେ ଲେଖା ସରୁ । ଆଜି ଡାକରେ ଯିବା ଦରକାର । ସପ୍ତାହରେ ଗୋଟିଏ ଚିଠି ସେ ଲେଖେ ପ୍ରଦୀପ୍ତକୁ, ଆଉ ଗୋଟିଏ ପୁଅକୁ । ଭାବିଚିନ୍ତି ଲେଖିବାକୁ ହୁଏ । ଆଗ ଆଗ ଯାହା ମନ ତାହା ସେ ଲେଖିଦେଉଥିଲା, ''ଧନରେ, ତୁ ମୋର ମନେପଡୁଚୁ ସବୁବେଳେ । ମୋ ଟେବୁଲ ଉପରେ ତୋ କ୍ରିକେଟ ଖେଳୁଥିବା ଫଟୋଟା ଅଛି । ତୋର ସେ ନୂଆ ପକେଟବାଲା ସାର୍ଟଟା ପିନ୍ଧୁଚୁ ନା ନାଇଁ ? ମମି କଥା ତୁ ଭାବୁ ନା ନାଇଁ ?'' ପ୍ରଦୀପ୍ତ ବିରକ୍ତ ହେଲା, ''ପିଲାଟାର ମନ ଦୁଃଖ ହେଲାଭଳି ଚିଠି ଦିଅ କାହିଁକି ? ବିଚରା ଏମିତିରେ ମା'କୁ ଛାଡ଼ି ଦୂରରେ ରହିଚି, ତାକୁ ଖୁସି କଲାଭଳି ଦି'ପଦ ଲେଖିପାରୁନା ?'' ପ୍ରଦୀପ୍ତକୁ ଆଗରୁ ସେ ଲେଖିଥିଲା, ''ତମେ ଭାରି ମନେପଡୁଚ । ସଞ୍ଜବେଳଟା ଏଠି ଜମା କଟେ ନାହିଁ । ବଦଳି କଥା କିଛି ବୁଝିଲ ?'' ପ୍ରଦୀପ୍ତ ଆଗେ ଉପଦେଶ ଦେଇ ଚିଠି ଲେଖୁଥିଲା, ଦିନ କେଇଟା ସବୁର କରିଯିବାକୁ କହୁଥିଲା । ଏଣିକି ଚିଠି ସବୁ ଅଲଗା ରକମର ହେଇଯାଇଚି । ପ୍ରଦୀପ୍ତ କଦବା କ୍ୱଚିତ୍ ଦେଉଥିବା ଚିଠିରେ, ଦି' ତିନିମାସରେ ଥରେ ଦେଖା ହେଉଥିବା ବେଳେ, କଥାବାର୍ତ୍ତାର ସ୍ୱର ଭିନ୍ନ ହୋଇଯାଇଚି । ଆଜିକାଲି ଅମିତା ଏମିତି ଶବ୍ଦ ଯୋଜନା କରି ଲେଖେ, ଯେମିତି ପ୍ରତି ଧାଡ଼ିର ତଳେ ଆଉ କିଛି ଛପିଲା ଅର୍ଥ ବାହାରିବ ନାହିଁ, କିଛି ପ୍ରଶ୍ନ କି ଆକ୍ଷେପ ମିଳିବାର କ୍ଲୁ ରହିବ ନାହିଁ ।

ଅଳ୍ପ ଦୂରରେ ବାରଣ୍ଡାରୁ ହଇଚଇ ଶୁଭୁଚି । ଦିନ ଆସି ଏଗାରଟା ବାଜିବ । ଆଜି ବୋଧେ ଆଉ ସ୍ତ୍ରୀଲୋକଟିର ଅପରେସନ୍ ହେଇପାରିବନି । ଅପରେସନ୍ ଠିକ୍ ନୁହେଁ, ଆବରସନ, ଗର୍ଭପାତ । ସାଧାରଣ କଥା, ଅଧଘଣ୍ଟାକରେ ମାମଲା ତୁଟନ୍ତା । ହେଲେ ଦି'ଦିନ ହେଲା ପାଳା ଲଗାଇଛନ୍ତି ସ୍ୱାମୀ-ସ୍ତ୍ରୀ । ଅମିତା ତାଙ୍କୁ ଜଣେଇ ଦେଇ ସାରିଛି ଯେ ସାଧାରଣ ଗର୍ଭପାତ କରିବାର ସମୟ ଗଡ଼ିଯାଇ ସାରିଲାଣି । ଏଣିକି ଆଉ ଡେରି କରିବା ମାନେ ମା'ର ସ୍ୱାସ୍ଥ୍ୟ ଉପରେ ବିପଦ । ପ୍ରକୃତରେ ତିନିମାସ ପରେ ଗର୍ଭପାତ କରାଇବା ମନା । କିନ୍ତୁ ଅମିତା ଜାଣେ, ବେଳେବେଳେ ବିଭିନ୍ନ କାରଣରୁ, ପରିବାରର ସୁଖଶାନ୍ତି ପାଇଁ ହେଉ ବା ଝିଅଟିଏର ଜୀବନ ରକ୍ଷା କରିବାଲାଗି ହେଉ, ନିୟମ ଭାଙ୍ଗିବାକୁ ହୁଏ ସବୁ ବିବେକୀ ଡାକ୍ତରଙ୍କୁ—ଏମିତି କି ଅଭିଭାବକଙ୍କୁ ରାଜି କରେଇବା, ଅସଲ ନିଷ୍ପତ୍ତିଟିଏ ନେବାର ଦାୟିତ୍ୱ ବି ନେବାକୁ ପଡ଼େ ।

ଏଇସବୁ ଘଟଣା ବି ଆଗ ଟିକିନିଖି ଲେଖୁଥିଲା ସେ ପ୍ରଦୀପ୍ତକୁ । ଆଜିକାଲି ଲେଖେନାହିଁ, ଲେଖିବସିଲେ ବି ଆଗକୁ ବଢ଼େନାହିଁ ଚିଠି, ଅଧାରେ ରହିଯାଏ କଥା । କାହିଁକିନା ସେ ଜାଣେ, କଥା ଆଉ ପହଞ୍ଚିବନି ପ୍ରଦୀପ୍ତ ପାଖେ । ଯାହା ପହଞ୍ଚିବ, ତା

ଖାଲି ଦରଖଣ୍ଡିଆ କିଛି ଘଟଣାର ବିବରଣୀ, ଯେମିତି ଘଟଣା ଖବରକାଗଜରୁ ବି ଅନେକ ପଢୁଥିବ ପ୍ରଦୀପ୍ତ ।

ତିନିବର୍ଷ ତଳ ହେଇଥିଲେ, ସେ ଆଜିର ଚିଠିରେ ଲେଖିଥାନ୍ତା, 'ଜାଣ ମୋ ହାତକୁ ଇଣ୍ଟରେଷ୍ଟିଙ୍ଗ କେସ୍‌ଟିଏ ଆସିଚି, ଆଦିବାସୀ ସ୍ତ୍ରୀଟିଏର ଚତୁର୍ଥ ଗର୍ଭ ହେଇଚି, ତା ସ୍ୱାମୀ କହୁଚି, ମୋ ପିଲା ନୁହଁ, ସ୍ତ୍ରୀ ଗର୍ଭପାତ କରିବାକୁ ମନା କରୁଚି, ଏଣେ ତା ସମୟ ବି ଟିକେ ଗଡ଼ିଗଲାଣି ...'

କଥାଟା ଠିକ୍ ଠିକ୍ ପ୍ରଦୀପ୍ତ ପାଖେ ପହଞ୍ଚୁଲା କି ନାହିଁ ତା'ର ଖାତିର ନଥାନ୍ତା ସେତେବେଳେ । ହେଲେ, ଆଜି ଭାବୁଚି, ପ୍ରଦୀପ୍ତ କ'ଣ ବୁଝିବ ସେ ଚିଠିରୁ ଯେ ଅମିତାର ଜୀବନ ଭିତରକୁ କେମିତି, କେତେ ଅନୁପାତରେ ପଶିଆସିଚି ଘଟଣାଟା ? କେମିତି କେତେଗୁଡ଼ାଏ ସକାଳ କ୍ରମେ ସଞ୍ଜ ହେଲାପରେ ଓ ରାତି ସକାଳ ହେଲାପରେ ଦିନେ ସଞ୍ଜଟିଏ ଆସେ, କବାଟ ଠକ୍ ଠକ୍ ହୁଏ ଓ ଘଟଣାଟିଏ ଉଭାହୁଏ ଅମିତାର ଜୀବନରେ । ଦାଣ୍ଡ ପାଖରୁ ଉଜ୍ଜ୍ୱଳ ମୁହଁରେ ଚାକରାଣୀ ଝିଅଟି ଧାଇଁ ଆସେ, କହେ—'ବାଇସା'ବ୍ ଜୀ, ସେଇ ଦି'ଜଣ ଆସିଲେଣି ପୁଣି । ସାଇଁ ସାଇଁ କରୁଥିବା ଖାଲି ଘରଟା ହଠାତ୍ ପୂରିଉଠେ ଝିଅଟିର କୁରୁକୁରୁ ହସରେ, ଯିଏ ଗତ କେଇଦିନ ଧରି ଜିଦି କରୁଥିଲା ଘରକୁ ଯିବ ବୋଲି । ଅନ୍ଧାର ରାତିରେ ତା ଗାଆଁକୁ, ଢ଼ୋଲବାଜା ଗୀତ ଶୁଣି ପଳେଇ ଯାଉଥିଲା କେତେଥର, ପୁଣି ବାପ ହାତରେ କାନଟଣା ହେଇ ଫେରୁଥିଲା । ଓ ଅମିତା ରେଡ଼ିଓ ଭଲ୍ୟୁମ କମ୍ କରି ପଚାରେ—'କିଏ କିରେ ?' ଦଶ ଏଗାର ବର୍ଷର ଝିଅଟି ହାତ ପାପୁଲିରେ ହସ ରୋକୁରୋକୁ କହେ—''ସେଇ ମରଦ ମାଇପି ଦୁହେଁ, ଯିଏ ଆଜି ଦି'ପହରେ ଆସି ଫେରି ଯାଇଥିଲେ, କହୁନଥିଲି ।'' ଅମିତା ଝିଅଟି ହାତରେ କହି ପଠାଇ ପାରିଥାନ୍ତା କାଲି ଡାକ୍ତରଖାନାକୁ ଆସ, ଏତେ ରାତିରେ ମୁଁ ପେସେଣ୍ଟ ଦେଖେ ନାହିଁ ବୋଲି, କିନ୍ତୁ ସେ ନିଜେ ଉଠି ବାହାରକୁ ଯାଏ ଘଟଣାଟିକୁ ପାଛୋଟିବା ଲାଗି ।

ଜୀବନ୍ତ-ନାଟକର ଅଂଶଟିଏ । ପୁରୁଷ କହୁଚି, ସେ 'ଅପ୍ରେସନ' ହେଇ ସାରିଚି, ତା ସ୍ତ୍ରୀ ପେଟରେ ପିଲା ଆସିଲା କୁଆଡୁ ? ସ୍ତ୍ରୀ କହୁଚି, ତା'ର କିଛି ଦୋଷ ନାହିଁ, 'ଅପ୍ରେସନ' ଫେଲ୍ ହୋଇଥିବ, ସେମିତି କାଳେ ହୁଏ । ପୁରୁଷ ଏଥର ଡାକ୍ତରାଣୀଙ୍କୁ ଭୁଲି ସ୍ତ୍ରୀ ଆଡ଼େ ହାତ ଉଞ୍ଚେଇ ଉହୁଙ୍କି ଯାଉଚି, ''ଆମ ଗାଆଁରେ ଏତେ ଲୋକ ଅପ୍ରେସନ ହେଇଥିଲେ, କାହାରି ଫେଲ୍ ହେଇନି, ଶାଳୀ, ଖାଲି ମୋ'ରି ?''

ଅମିତା ଦିହିଁଙ୍କୁ ଶାନ୍ତ କରାଇ କହିଲା, 'ତମେ ଆଜି ଯାଅ । ଅପ୍ରେସନ ଠିକ୍ କି ନାହିଁ ପରୀକ୍ଷା କଲେ ଜଣାପଡ଼ିବ । କାଲି ଡାକ୍ତରଖାନାକୁ ଆସ ।'

ସେତେବେଳେ ସୁଦ୍ଧା ସେ ଦୁହିଁଙ୍କ ଜୀବନର କିଛି ଅଂଶ ତା ଘରଦୁଆର ଭିତରକୁ ଚହଲି ଆସିଥାଏ । ସେତିକି ବେଳେ ହିଁ ତା'ର ଖିଆଲ୍ ହୁଏ ଯେ ଏ ସପ୍ତାହରେ ପ୍ରଦୀପ୍ତକୁ ଚିଠି ଲେଖାହେଇନାହିଁ ଏଯାକେ । ହୁଏତ ଏଇ. ମୁଡ୍‌ରେ ଅନାୟାସରେ ଲେଖାହେଇ ଯାଇପାରିବ, ଯେଉଁ ଚିଠି ପଢ଼ିଲେ ପ୍ରଦୀପ୍ତ ଅନ୍ୟଥର ଭଳି କହି ବି ପାରିବ ନାହିଁ, 'ଏଇଟା ଚିଠି ନା ପାଣିପାଗ ଖବର ?'

ନିଜ ଚିଠିରେ, ଆଉ ଅମିତା ସାଙ୍ଗରେ ଥିଲାବେଳେ ତା କଥାବାର୍ତ୍ତାରେ ପ୍ରଦୀପ୍ତର ସମ୍ପୂର୍ଣ୍ଣ ସଂସାର ଥାଏ । ସେଇ ସଂସାରରେ ତା ଓକିଲାତି, ବାପା ମା, ପୁଅ, ଘର ସମ୍ପତ୍ତି, ସହର ସାରା ବିଛାଡ଼ି ହୋଇ ପଡ଼ିଥିବା ଅସଂଖ୍ୟ ବନ୍ଧୁବାନ୍ଧବ, ଜ୍ଞାତି-ପରିଜନ ଥାଆନ୍ତି, ପତ୍ରପତ୍ରିକା, ରାଜନୀତି, ଟିଭି, ସଂଗୀତ ଆସର ସବୁ ଥାଏ । ଆଉ ସବୁ ସମୟରେ ତା ସଂସାରର ଅଂଶଟିଏ ହେଇରହିଥାଏ ତା ପତ୍ନୀ ଅମିତା, ଯିଏ ଏଇ କିଛିଦିନ ଲାଗି ପରିବାରରେ ଅନୁପସ୍ଥିତ ଥାଏ । ଅମିତା କ୍ରମେ ବୁଝିପାରେ ଯେ ଏଇଠି ତା'ର କଟୁଥିବା ଦିନ ଓ କ୍ରମେ ଆପେ ତିଆରି ହୋଇଯାଇଥିବା ଗୋଟିଏ ସାମୟିକ ସଂସାରର କିଛି ହେଲେ ଅସ୍ତିତ୍ୱ ପ୍ରଦୀପ୍ତର ଜୀବନରେ ନାହିଁ । ଆଉ ଅମିତା ଏକଥା ଭାବି ବି ବେଳେବେଳେ ଧନ୍ଦିହୁଏ ଯେ ପ୍ରକୃତରେ କେତେ ଶୂନ୍ୟସ୍ଥାନ ସେ ଛାଡ଼ିଯାଇଥାଏ ପ୍ରଦୀପ୍ତର ଜୀବନରେ ?

ଦି' ତିନିବର୍ଷ ତଳେ ପ୍ରଦୀପ୍ତ ଚିଠିରେ ଲେଖୁଥିଲା, 'ତମେ ମନେ ପଡୁଛ, ଶୋଇବାଘରକୁ ପଶିବାକୁ ମାଡ଼ିପଡୁଛି ରାତିରେ ।' ଅଥବା 'ତମେ ଲଗେଇଥିବା ଲେମ୍ବୁଗଛରେ ଫଳ ଧରିଚି । କାଲି ଘୋଷବାବୁଙ୍କ ଘରେ ଭୋଜିଥିଲା, ସମସ୍ତେ ପଚାରୁଥିଲେ ତମକଥା ।' ସେ ସମୟରେ ପ୍ରଦୀପ୍ତ ପାଖରେ ଥିଲାବେଳେ ଅମିତା ସୁନ୍ଦର ଖାପିଯାଏ ସେ ସଂସାରରେ । ତା'ର ଏଠିକାର ଦିନମାନ, ତାଙ୍କ ଟିକିନିଖି ସମସ୍ୟା, କିଛି ନ ଘଟୁଥିବା ସମୟ, ସବୁ ଏକାବେଳକେ ଉଭେଇ ଯାଆନ୍ତି, ଟିଭି ପର୍ଦ୍ଦାରୁ ଲୋକବାକ ସବୁ ଉଭେଇଗଲା ଭଳି । ହେଲେ, ପୁଣି ଏ ଅପନ୍ତରା ଛୋଟିଆ ସହରଟିର ଡାକ୍ତରଖାନା ହତା ଭିତରେ ଦିନ, ସପ୍ତାହ, ମାସ କାଟିବା ବେଳେ ଅମିତାର ଜାଣିବାକୁ ଇଚ୍ଛାହୁଏ, ପ୍ରଦୀପ୍ତର ପରିପୂର୍ଣ୍ଣ ଜୀବନ ଲାଗି ତା'ର, ଅଥବା ଅନ୍ୟ ସବୁ କେଉଁ କଥାର କେତେ ପ୍ରୟୋଜନ; ଆଉ ଏକଥା ବି ଜାଣିବାକୁ ଇଚ୍ଛାହୁଏ ଯେ ଅମିତାର ଜୀବନର ପ୍ରୟୋଜନ ବିଷୟରେ କେବେ କିଛି ଖିଆଲ ପ୍ରଦୀପ୍ତର ମନକୁ ଆସେ କି ନାହିଁ । ବେଶୀ ବ୍ୟସ୍ତ ହେଲେ ପ୍ରଦୀପ୍ତ କହେ, 'କେତେଟା ଦିନ କାଟିନେବା କଥା ତ । ବଦଳି ହୋଇ ଯିବନି କି, ଏତେ ବ୍ୟସ୍ତ କାହିଁକି ? ତମର ସମସ୍ତେ ତ ଆମେ ଅଛୁ—ମୁଁ ଅଛି, ପପୁ ଅଛି । ତମର ଚାକିରି, ସ୍ୱତନ୍ତ୍ର ପରିଚୟ, କ'ଣ ନାହିଁ ତମ ପାଖରେ ?'

ସବୁ ଥାଇ, ସମସ୍ତେ ଥାଇ ବି ଆଉ ଜଣେ ଆସେ, ଅବାଞ୍ଛିତ ଅତିଥି, ରୋହିତ। ଆଉ ପାଚିରିଟିଏ ଠିଆ କରିଦେଇ ଯାଏ ଅମିତା ଆଉ ତା' ସଂସାର ମଝିରେ। ଏମିତି ପାଚିରିଟିଏ ଯେ ରୋହିତ ନିଜେ ଦିନେ ବାହାରି ଚାଲିଯିବାପରେ ବି ଚୂନଦିଆ ପଥର କାନ୍ଥଭଳି ସିଏ ଦିନକୁଦିନ ଶକ୍ତ ହେଇ ହେଇ ଯାଏ। ଏକ ଆରେକକୁ ଆଖି ପାଉନଥିବା ଦୂର ଜାଗାରେ ସେ ଦିହେଁ ଥାଆନ୍ତୁ ବା କିଛି ବାରିହେଉ ନଥିବା ଅନ୍ଧାରରେ, ପ୍ରତି ପାଦରେ ଦିହିଙ୍କ ମଝିରେ ବାଟ ଆଗୁଳି ଦିଏ ସେ ପାଚେରି। ଏମିତିକି ଚିଠିଟିଏ ବି ଆଗକୁ ବଢ଼େନାହିଁ।

ହସପିଟାଲରେ ଆଉଟ୍‌ଡୋର ରୋଗୀ ଆଉ ଏତେବେଳକୁ ଆସନ୍ତି ନାହିଁ। ବାରଟା ବେଳେ ଡାକ ଯିବ। ବାରଟା ବେଳେ ତା'ର ଡିଉଟି ସମୟ ବି ସରିବ। ପୁଣି କାଲିକି ରହିଯିବ ଅଧା ରହିଥିବା କାମ।

ପିଅନ କିଷନ୍ ଚା ନେଇ ଆସିଲା। ତା ମୁହଁରେ ଚାପା ହସ, କ'ଣ ଟିକିଏ କହିବାକୁ ଇଚ୍ଛା। କପ୍ ଉଠାଇ ଅମିତା ପଚାରିଲା, 'କ'ଣ ହେଲା, କିଛି ଠିକ୍ ହେଲା ସେ ପେସେଣ୍ଟର ?'

ବୟସ୍କ ମୁହଁ କୁଞ୍ଚାଇ, ଦାନ୍ତ ଦେଖାଇ କିଷନ୍ ଉତ୍ତର ଦେଲା, ''ନାହିଁ ମାଡାମ୍, ଚାଲିଚି ସେମାନଙ୍କର କଜିଆ। ଶୁଣୁନାହାନ୍ତି, ଏଠିକି ଯାଏ ତାଙ୍କ ପାଟି ଶୁଭୁଚି ପରା।''

''କହ ତାଙ୍କୁ, ଚାଲିଯାଆନ୍ତୁ ଆଜି। ଘରେ ତାଙ୍କର କଜିଆପତ୍ର ସାରି ଯାହା କରିବା କଥା ଠିକ୍ କରି ପରେ ଆସିବାକୁ କହ ତାଙ୍କୁ।''

କିଷନ୍ ହାତ ମଳିଲା ବକ୍‌ସିସ୍ ପାଇଥିଲା ପରି, ଆଉ ବାହାରିଗଲା ପରମ ଉତ୍ସାହରେ।

ଦି'ଦିନ ହେଲାଣି ତାଙ୍କର ଫଇସଲା ହେଇପାରୁନି। ପ୍ରଥମ ଦିନ ହିଁ ଅମିତା ସଫା କହିଦେଇଥିଲା, 'ସେସବୁ କଥା ଠିକ୍ କରିବା ଡାକ୍ତରର କାମ ନୁହେଁ। ତମ ଘର କଜିଆ ତମେ ତୁଟାଅ। ପରୀକ୍ଷାରୁ କେବଳ ଅପରେସନ କଥାଟା ବୁଝାଯିବ।' ହେଲେ, ପରଦିନ ପୁରୁଷଟିକୁ ଯେତେବେଳେ ଜଣାଗଲା ଯେ ଆର ଡାକ୍ତର ପଟେଲ ଲମ୍ବା ଛୁଟିରେ ଯାଇଛନ୍ତି, ସେ ପରୀକ୍ଷା ପାଇଁ ବି ମନା କରିଦେଲା, କାରଣ ତା'ର ବିଶ୍ୱାସ ଡାକ୍ତରାଣୀ ପୁରୁଷ ଲୋକଙ୍କ କଥା ନିର୍ଣ୍ଣୟ କରି ପାରିବେନି। ନିଷ୍ପତ୍ତି ନେଲା, 'ତା ହେଲେ ଡାକ୍ତରାଣୀ ମାଆ ତମେ ତା ପେଟ ଧୋଇଦିଅ। କାଢ଼ି ସଫାକର ସେ ପିଲାକୁ।' ଏଣେ ତା ସ୍ତ୍ରୀ ପାଟି କରି କହୁଥିଲା, 'ମୁଁ ଜମା ପେଟ ଧୋଇବିନି।' ତା ଶୁଣିବାରେ କାଳେ କେଉଁ ଝିଅଟିଏ ଏମିତି ପେଟଧୁଆରେ ମରିଯାଇଥିଲା। ସେଇଠୁ

ହସ୍‌ପିଟାଲ୍ ଷ୍ଟାଫ୍‌ଙ୍କର ଫୁସୁଲାଇବାରେ ଟିହିଁକାଇବାରେ ଦିହିଙ୍କର ବାକ୍‌ବିତଣ୍ଡାରୁ କାହାକୁ ନେଇ ପୁରୁଷର ସନ୍ଦେହ, କାହିଁକି ପରୀକ୍ଷା ନିରୀକ୍ଷା କଥା ସବୁ ମିଛ ଓ ସ୍ତ୍ରୀ ପକ୍ଷରୁ, କାହିଁକି ପୁରୁଷ ତାକୁ ପେଟ ଧୋଇବା ବାହାନାରେ ଜୀବନରୁ ମାରିଦେବାକୁ ଚାହୁଁଛି, ଏସବୁ କଥା ଜଣାପଡ଼ିଲା । ଅମିତାକୁ ଏକଥା ବି ଚିଠିରେ ଲେଖିଦେବାକୁ ଇଚ୍ଛା ହେଲା, ଏତେ ରୋଚକ ଭାଷାରେ ଆକ୍ଷେପମାନ ସେ ଦୁହେଁ ପରସ୍ପର ପାଇଁ ପ୍ରୟୋଗ କଲେ ଯେ ଟିଭି, ସିନେମାରେ ଅନଭ୍ୟସ୍ତ ଏଠିକାର କର୍ମଚାରୀ ଆଉ କେତେଜଣ ରୋଗୀ ଦି' ଘଣ୍ଟା କାଳ ବାକି ସବୁ କଥା ଭୁଲି ତାଙ୍କୁ ବୁଝାସୁଝା କରିବାରେ, ଛି ଛି କରିବାରେ ଓ ଧମକଚମକ ଦେବାରେ କଟାଇଲେ ।

ଶେଷରେ ଅମିତା କଡ଼ା ସ୍ୱରରେ କହିଲା, "ତମେ ଦିହେଁ ଗଲ ଏଠୁ । ବାହାର । ଯାହା ଠିକ୍ କରି, କାଲି ସକାଳକୁ ଡାକ୍ତରଖାନା ଆସ । ମୁଁ ଦେଖିବି । ମା'ର ଜୀବନକୁ ବିପଦ ବୋଲି ଜାଣି କ'ଣ କୋଉ ଡାକ୍ତର ଆବରସନ୍ କରାଏ ? ମୋର ନିଜ ଚାକିରିକୁ ଭୟ ନାହିଁ ? ଏବେ ଘରକୁ ଯାଅ ଚୁପ୍‌ଚାପ୍ ।"

ହେଲେ, ଆଜି ସକାଳୁ ପୁଣି ଯୋଉକଥାକୁ ସେଇକଥା । ଏଣେ ସ୍ତ୍ରୀ କହୁଚି, ତା ପେଟରେ ପିଲା ହଲ୍‌ଚଲ୍ ହେଲାଣି, ଜାଣିଶୁଣି ସେ ଜୀବହତ୍ୟା କରିବ କାହିଁକି ? ପୁଣି ସେଥିରେ ଯଦି ତା ନିଜ ପ୍ରାଣଟି ଚାଲିଯାଏ, ତେବେ ତା ପିଲାଙ୍କୁ ପାଳିବ କିଏ ? ସେ ଜାଣିଚି ତା ସଉତୁଣୀ ଆଣିବ ବୋଲି ସ୍ୱାମୀର ଏସବୁ ଯେଖନା । ଏଥିରେ ପୁଣି ପୁରୁଷ ହାତ ଉଠେଇ ମାରେ-ନ-ମାରେ ହେଉଚି, ଆଉ ଦି'ଜଣ ତାକୁ ଧରିରଖିଲା ବେଳକୁ ପାଟି କରୁଚି, ପେଟର ପିଲାକୁ ରଖିଲେ ସ୍ତ୍ରୀକୁ ଘରେ ରଖିବା ତ ଛାଡ଼, ଫେରିବା ବାଟରେ ଦି'ଗଡ଼ କରି ହାଣିଦେବ ବୋଲି କହୁଚି । ସ୍ତ୍ରୀ ବୋବାଳି ଛାଡ଼ି ସ୍ୱାମୀକୁ ସମ୍ପାକଟା କରୁଚି ।

ସେତିକିରେ ଅମିତା ସେ ଦିହିଙ୍କୁ ନର୍ସ ପିଅନଙ୍କ ଜିମାରେ ଛାଡ଼ି ନିଜ କୋଠରିକୁ ଫେରିଆସିଲା । ଦି'ଦିନ ହେଲା ଅଧାରେ ରହିଥିବା ଚିଠିଟାକୁ ଖୋଲିଲା ।

କାଲି ସନ୍ଧ୍ୟାରେ ନିଜ ଛୋଟିଆ କ୍ୱାଟର୍ସର ବାରଣ୍ଡାରେ ବସି ସେ ପ୍ରଦୀପ୍ତର ଗତ କେତେଟା ଚିଠି ଖୋଲି ପଢ଼ିଥିଲା, ସତେକି ସେଥିରେ କେଉଁଠି ଅକସ୍ମାତ୍ ମିଳିଯିବ ପ୍ରଦୀପ୍ତ ପାଖରେ କଥା ପହଞ୍ଚାଇବାର ଚାବି । ସବୁ ଚିଠିପତ୍ରରେ ଆଜିକାଲି ଗୋଟିଏ ଅଦୃଶ୍ୟ ପ୍ରଶ୍ନ ଝୁଲୁଥାଏ ପ୍ରଦୀପ୍ତର । ରୋହିତ କିଏ ଥିଲା ତମ ଜୀବନରେ ? କେତେ ପାଖକୁ ଆସିଥିଲା ତମର ? ଠିକ୍ କେତେ ? ସାମ୍ନାସାମ୍ନି ଥିଲାବେଳେ ବି ସେଇ ପ୍ରଶ୍ନ । ପ୍ରଥମେ କେତେଦିନ ଚିତ୍କାର କରି ଟେବୁଲ କାନ୍ଥ ବାଡ଼େଇ ପଚାରୁଥିଲା ପ୍ରଦୀପ୍ତ, ଆଜିକାଲି ସେ ପ୍ରଶ୍ନ ଝୁଲୁଥାଏ ଅଦୃଶ୍ୟ ପାଚିରି ହେଇ । ପ୍ରଥମେ କେତେଦିନ ନେହୁରା

ହେଇ ଅମିତା କହିଥିଲା ଉତ୍ତର—'କିଛି ନଥିଲା, ତମେ ଭୁଲ୍ ବୁଝୁଚ ।' ଲୁହ କୋହରେ, ଅପମାନରେ ରୁନ୍ଧି ହେଇ କହୁଥିଲା, 'ଏମିତି ପ୍ରଶ୍ନର ଭଲା ମୁଁ କି ଉତ୍ତର ଦେବି ?' ଓ ଶେଷକୁ ପ୍ରଶ୍ନ ପଚରାଗଲା ନାହିଁ, ଉତ୍ତରର ଉଚ୍ଚବାଚ ହେଲା ନାହିଁ ।

ଅମିତା ଛୁଟିନେଇ ଘରକୁ ଗଲେ, ସାଧାରଣ ଜୀବନ ଫେରି ଆସିଥିଲା ପରି ଲାଗେ ଦିନଯାକ, ପରିବାର ବନ୍ଧୁବାନ୍ଧବ ଗହଣରେ । ଦିହେଁ ଏକୁଟିଆ ପଡ଼ିଗଲା ବେଳେ କହିବାକୁ କିଛି କଥା ନଥାଏ । କେତେଥର ଏମିତି ଅତିଷ୍ଠ ବେଳ ଆସେ, ଅମିତା ଓଠ ଖୋଲେ କହିବ ବୋଲି । କହିପାରେ ନାହିଁ । ଜାଣିପାରେ ନାହିଁ କଣ କହିବ । ପ୍ରଦୀପ୍ତ ଚାହୁଁଥିବା ସତ ଯଦି କହିଦିଏ, ପରିଣତି କ'ଣ ବୋଲି କ'ଣ ହେଇଯାଇପାରେ । ଏକଥା ଜାଣି ବି କେମିତି ଭଲା କହିବ ସେ । ଆଉ ପୁଣି, କି ନିରୋଳା ସତ ବା ସେ କହିଦେବ ପ୍ରଦୀପ୍ତ ଆଗରେ ? ଯେ ରୋହିତ ଆସିଥିଲା ମୋ ଜୀବନକୁ, କିଛି ସମୟ ପାଇଁ । ହେଲେ, ଏବେ ତ ସେ ନାହିଁ । ପ୍ରଦୀପ୍ତ ଯେଉଁଠି ଥିଲା, ସେଇଠି ଅଛି ତା ଜୀବନରେ । କାହିଁକି ସେ ଏତେବଡ଼ ଦାମ୍ ଦେବ ରୋହିତର କିଛି ସମୟର ଉପସ୍ଥିତି ପାଇଁ ? ସେ ଉପସ୍ଥିତି ବା ଅନୁପସ୍ଥିତି କଥା ଜାଣିଲେ କାହାର ବା କି ଲାଭ ? କି ସତ ଜାଣିବାକୁ ଚାହୁଁଚି ପ୍ରଦୀପ୍ତ । ରୋକ୍‌ଠୋକ୍ କିଛି କଥା, କେତୋଟି ତଥ୍ୟ, ଯାହାକୁ ସେ ଅସଲକଥା ବୋଲି ଭାବୁଚି । ଅମିତା ମୁହଁରୁ ସ୍ୱୀକାରୋକ୍ତି ଶୁଣିବାକୁ ଚାହୁଁଚି ଯେ ରୋହିତ ସାଙ୍ଗେ ସେ ସମୟ ବିତାଉଥିଲା—ଏତିକି ଏତିକି ସମୟ, ଏତିକି ଘନିଷ୍ଠତାରେ । ଘଣ୍ଟାକଣ୍ଟାରେ କେତିକି ସମୟ, ପ୍ରଦୀପ୍ତ ଜାଣିଥିବା ଅଭିଧାନରେ ବୁଝାଯାଇଥିବା କେଉଁ ଅନୁପାତର ଘନିଷ୍ଠତା ।

କିଏ ରୋହିତ । କେମିତି ସେ ପାଦ ପକାଇଥିଲା ତା ଜୀବନରେ, ପ୍ରଦୀପ୍ତ କେବେହେଲେ ଜାଣିବ ନାହିଁ । ଯେମିତି ସେ ଜାଣିବନି କେମିତି ଖାଁ ଖାଁ ଦ୍ୱିପ୍ରହରମାନଙ୍କର, ହସ୍‌ପିଟାଲ ବାରଣ୍ଡା ତଳକୁ ଓହ୍ଲାଇ ଧୂଳିଆ ସଡ଼କରେ ଅମିତା ପାଦ ପକାଏ, ସେତେବେଳେ ହତା ଭିତରକୁ ବଣ ଆଡ଼ର ଥଣ୍ଡାପବନ ଶୁଖିଲା ପତ୍ର ଆମ୍ବ-ବଉଳ ଉଡ଼ାଇ ଆଣୁଥାଏ ଆଉ ଥକାପାଦରେ ଅମିତା କେମିତି ଚାଲିଚାଲି ନିଜ ଶୂନଶାନ୍ କ୍ୱାଟର୍ସର ତାଲା ଖୋଲେ । ଯେମିତି ପ୍ରଦୀପ୍ତ କେବେ ଜାଣିପାରିନି ସଞ୍ଜବେଳେ ନିଜ ଅଗଣାରେ ଅମିତା ସାମ୍ନା ଆକାଶକୁ ଆବୋରିଥିବା କଳା ପାହାଡ଼କୁ ଅନେଇ ବସିଥିବା ବେଳର କଥା, ରାତିରେ ତକିଆରେ ମୁହଁମାଡ଼ି କାନ୍ଦିବାର କଥା, ଦିନଦିନ ଧରି ଡାକବାଲାକୁ ଚାହିଁ ରହିବାର କଥା ଓ ଚିଠି ଆସିଲେ ସେଥିରେ ନିଜ ନଥିବାବେଳେ ସୁରୁଖୁରୁରେ ଚାଲିଥିବା ସଂସାରଟିଏର ମାନଚିତ୍ର ଦେଖି ଦୀର୍ଘଶ୍ୱାସ ପକେଇବାର କଥା । ଅକାରଣ ଅପଚୟରେ ଟୋପା ଟୋପା ହେଇ ଅନନ୍ତ ସମୟ

ବହିଯାଉଥିବାର କଥା, ଆଉ ପୁଣି ଅମିତାର ଛାତିଭିତରେ ଏବେ ବି ଯୁଗ ଯୁଗ ପାଇଁ ଖାଲି ପଡ଼ି ରହିଥିବା ଟାଙ୍ଗରା ଭୂଇଁର କଥା ।

ପିଅନ କିଷନ୍ କେତେବେଳୁ ଆସି ବେସିନ୍ ପାଖେ ସଫା ତଉଲିଆ, ସାବୁନ୍ ରଖୁଚି, ସବୁଦିନ ଭଳି ଡେରି ହେଲା ବୋଲି କ'ଣ ବାହାନା ବତାଉଚି । ପୁଣି ଥାକର ଓଷଦପତ୍ର ସଜାଡୁଚି ଗପିବାର ଆଳ ଖୋଜିବା ଲାଗି ଓ ଗପୁଚି, ''ଏମାନଙ୍କର ପର୍ବପର୍ବାଣି ବେଳେ ଏମିତି ହୁଏ ମା' । ମଦ ପିଅନ୍ତି, କିଛି କ'ଣ ହୋସ୍ ଥାଏ । ପର୍ବ ବେଳେ ସବୁ ଚଳେ । ଆପଣଙ୍କ ବାବୁ ସାହାବଙ୍କ ପରି ପକ୍‌କା ବଖରା ବଖରା ହେଇ ଘର ତାଙ୍କର ଥାଏ ନା ସଡ଼କ ବଜାର ଥାଏ ନା ବିଜୁଳି ଲାଇଟ୍ ? ବଣ ଜଙ୍ଗଲ ଭିତରେ ଅନ୍ଧାର ଝୋପଡ଼ିରେ ରହିବା ଲୋକ, କେତେବେଳେ ନିଶା ହୋସ୍‌ରେ କ'ଣ ଟିକିଏ ଭୁଲ୍‌ଭଟକା ହେଇଯାଏ, ସେତେବଡ଼ କଥା ବୋଲି କିଏ ତାକୁ ଧରେ ନାହିଁ ।''

ଅମିତା ବାରିଲା କ'ଣ ଗୋଟାଏ ତାକୁ ସେ ବୁଝାଇବାକୁ ଚେଷ୍ଟାକରୁଚି ତା ନିଜ ଲୋକଙ୍କ ବିଷୟରେ । ପଚାରିଲା, 'ତା ହେଲେ ଏ ଦିହିଙ୍କ ଭିତରେ ଏତେ ପାଟିତୁଣ୍ଡ କାହିଁକି ଚାଲିଚି ? ତୁଟିଯିବା କଥା ।'

ତା କଥା ନଶୁଣିଲା ଭଳି ଓଷଦ ବୋତଲରେ ନଜର ରଖି କିଷନ୍ କହିଲା, 'ଏବେ ସିନା ଏତେକଥା ବାହାରିଲା ବୋଲି, ନସ୍‌ବନ୍ଦି ଅପ୍ରେସନ ହେଲାବୋଲି ମଣିଷ ଜାଣିଲା କ'ଣ ନା ଏଇ ମରଦର ଆଉ ପିଲା ହେବନାହିଁ । ଏଣେ ତା ସ୍ତ୍ରୀର ପିଲା ହେଲେ କିଏ ଦାୟୀ ଆପଣ କହୁନାହାନ୍ତି ?'

ଅମିତାଙ୍କୁ ଚମକାଇ ପଛପାଖରୁ ନର୍ସ ଖୁଁ ଖୁଁ ହେଇ ହସିପକାଇଲା । ଅମିତା ବି ହସିଲା ଟିକିଏ । କିଷନ୍ ଉତ୍ସାହିତ ହେଇ ଭାଷଣ ଦେଲା, 'ଆମ ପିଲାଦିନ ବେଳ ହେଇଥିଲେ ମା, ମରଦ ତା ମାଇପିର ଚୁଟି ଧରିପକାନ୍ତା, ଯଦି ସତରେ ତା ନଜରରେ ଆଉ କିଏ ମରଦ ପଡ଼ିଥାନ୍ତା ।' ସାମାନ୍ୟ ଅପ୍ରସ୍ତୁତ ହେଲାଭଳି ରହିଯାଇ ପୁଣି ସାହସ ବାନ୍ଧି ସେ କହିଲା, 'ମାଇପି ବି ଚାରିଟା ବିଧା ଗୋଇଠା ଖାଆନ୍ତା ତା ମରଦଠୁଁ, ସେଇଠୁଁ ସାଇପଡ଼ିଶା ଆସି ବୁଝାସୁଝା କରିଦିଅନ୍ତେ, କଥା ତୁଟନ୍ତା । ଏବେ ମାଡ଼ମ୍ ଜୀ, ଏ ଲୋକଟିର ମାଇପର ପେଟରେ ପିଲାରହିଲେ ଆଉ ଯେତେ ସିଏ କାନ୍ଦିଲେ ବୋବେଇଲେ ବିଚରାଟି ଭଲା କେମିତି ଶୁଣିବ, କହୁନାହାନ୍ତି ?'

ନର୍ସ ବହେ ହସିଲା । ଅମିତା କାଗଜପତ୍ର ଓଲଟାଇ ହସ ଚାପିଲା । ହସକୁ ଖାତିର ନକରି ଦମ୍ଭରେ ଏଥର ସ୍ୱର ଉଁଚେଇ କିଷନ କହିଚାଲିଲା—'ଆଗେ ବୁଢ଼ା ଲୋକେ କହୁଥିଲେ, ମାଇପି ଲୋକ ହେଲା ମାଟି । କ୍ଷେତରେ ଆମେ ଯେଉଁ ମଞ୍ଜି

ପକାଉ ସେଇ ଗଛ ଉଠେ, ତା'ବୋଲି ତା ଛଡ଼ା ଆଉ କିଛି ହେଲେ ଗଛ ଉଠିପାରିବ ନାହିଁ ବୋଲି କିଏ କହିପାରିବ ? ନା ଉଠିଲେ, ମାଟିକୁ କିଏ ଛାଡ଼ିଦେଇ ପଳାଏ ?'

ଏଥରକ ନର୍ସ ହସି ହସି ନୟାନ୍ତ ହୋଇଗଲା । କିଷନ କ'ଣ ଭାବି ନିଜ କଥାର ଆମୋଦଜନକ ଦିଗଟାକୁ ବି ସ୍ୱୀକାରକଲା ଓ ହସିଲା । ଅମିତା ହସ ବନ୍ଦ ହେବା ଯାକେ ଅପେକ୍ଷା କଲା, ତା'ପରେ କହିଲା, 'ହଉ, ହେଲା । ଏଇଠି ଭାଷଣ ନଦେଇ ତମେ ସେମାନଙ୍କୁ ଯାଇ ବୁଝାଉନ ?'

କିଷନ୍ ଦୁଇ ହାତ ହଲେଇଲା 'କିଛି-ଆଉ-ଉପାୟ-ନାହିଁ' ଢଙ୍ଗରେ । ନର୍ସ କହିଲା, 'ଏମ୍.ଟି.ପି.ଟା କରିଦିଅନ୍ତୁ ମାଡ଼ାମ୍, ସବୁ ଝମେଲା ତୁଟିଯିବ । ପିଲା ଜନ୍ମ ନହେଲା ଯାଏ ଏମାନେ ଠିକ୍ ହିସାବ କୋଉଠୁ ରଖିଜାଣନ୍ତି ଯେ ? ଆପଣ ଦେଖିବେ, ଦି' ମାସ ପରେ ସେମାନେ ନିଜେ ସବୁ ଭୁଲିଯାଇଥିବେ ।'

କିଷନ୍ ଟେବୁଲରୁ କପ୍ ପ୍ଲେଟ ଉଠାଇ ଗମ୍ଭୀର ଉପଦେଷ୍ଟା ଭଳି କହିଲା, 'ଯଦି ନିହାତି ସେ ରାଜି ନହେଉଚି, ମାଡ଼ାମ୍ ଜୀ, କିମ୍ବା ସମୟ ଗଡ଼ିଗଲାଣି, ତା'ହେଲେ ଆପଣ କହିଦିଅନ୍ତୁ ଯେ ମରଦର ଅପ୍ରେସନ ଫେଲ୍ କରିଚି ବୋଲି । ପଟେଲ୍ ଡାକ୍ତର ଆସନ୍ତୁ, ତା'ର ଗୋଟାଏ ମିଛ ପରୀକ୍ଷା କରେଇ ଦେଲେ ଯିବ ।'

ଅମିତା ଭ୍ରୂକୁଞ୍ଚେଇଲା, 'କି ଅସମ୍ଭବ କଥା କହୁଚ । ଏମିତି ମିଛ ଟେଷ୍ଟ ରିପୋର୍ଟ ଦେଇ କାହିଁକି ଭଲା କିଏ ରିସ୍କ୍ ନେବ ?'

ଏତେବେଳକୁ ନାଟକର ନୂଆ ଦୃଶ୍ୟଟିଏ ପରି କବାଟ ପାଖେ ଉଭା ହେଲା ନିଜେ ମାଇପିଟି । ତା ପଛରେ ଆଉ ଜଣକେତେ । ସମସ୍ତେ ଚୁପ୍‌ଚାପ୍ । ଆଖିପୋଛି ସ୍ତ୍ରୀ ଲୋକଟି କହିଲା ଯେ ଏଥରକ ସେ ପ୍ରସ୍ତୁତ ଅଛି, ପେଟ ଧୁଆ ହେଇଯାଉ । ପାଖରେ ତା ସ୍ୱାମୀ ଠିଆହେଇଥାଏ ।

ଚାପା ହଇଚଇ ଭିତରେ ଅମିତା ଘଡ଼ି ଦେଖିଲା । ଆଉ ପନ୍ଦର ମିନିଟ୍ ଅଛି ବାରଟା ବାଜିବାକୁ । ନର୍ସକୁ ଧୀରେ ପଚାରିଲା, 'କ'ଣ କହୁଚ, ଆଜି କରିବା ନା ଟାଳିଦେବା କାଲିକୁ ?'

ହସକୁରୀ ନର୍ସ ଏଥର ଉଦାସ ମୁହଁରେ କହିଲା, 'କରିଦିଅନ୍ତୁ, ମାଡ଼ାମ୍, ଝମେଲାଟା ତୁଟିଯାଉ ବିଚରାଙ୍କର । କାଲି ପୁଣି କ'ଣ ହେବ କିଏ ଜାଣେ ?'

ନର୍ସ ସଙ୍ଗେ ସଙ୍ଗେ ବାହାରିଗଲେ ସମସ୍ତେ । ଅପରେସନ ଟେବୁଲ୍ ଉପରେ ପେସେଣ୍ଟକୁ ରେଡି କରାଗଲେ ଅମିତା ଯିବ । କାଗଜପତ୍ର ଗୋଟାଇବା ବେଳେ ତା ନଜରରେ ପଡ଼ିଲା ପିଅନ୍ ଭୁଲ୍‌ରେ ଟେବୁଲ୍ ଉପରେ ଏଣ୍ଟାସିଡ୍ ଓଷଦର ବୋତଲଟି

ରଖିଦେଇଚି । ପ୍ରଦୀପ୍ତ ମନେ ପଡ଼ିଲା । ପୁଣି ଥରେ ପର୍ସରୁ ଚିଠିଟା ଖୋଲି ଅମିତା ତରତରଗେ ଲେଖିଲା, 'ମନେ ପଡ଼ିଗଲା, ତମର ଆଜିକାଲି ଏସିଡିଟି ହେଉଚି ନା ନାହିଁ ? ସକାଳୁ ଖାଲି ପେଟରେ ଚା ପିଉନା ତ ? ବହୁତ ଦିନ ହେଇଗଲାଣି ତମମାନଙ୍କୁ ଦେଖିନି । ଡାକ୍ତର ପଟେଲ ଫେରୁ, କିଛି ଦିନ ଛୁଟିନେଇ ଯିବି ।' ଆଉ ଦି'ଧାଡ଼ି ଲେଖି ଚିଠି ସାରିଦେଇ ସେ ଉଠିଲା ।

ଅପରେସନ ଥିଏଟର ବାହାରେ ପୁରୁଷଟି ତୁନିହେଇ ଠିଆ ହେଇଥାଏ । ଅମିତା କବାଟ ଖୋଲି ଠିକ୍ ପଶିଲାବେଳକୁ ସେ ହଠାତ୍ ପାଖକୁ ଆସି ହାତ ଯୋଡ଼ିଲା, ଥଥମତ ହେଇ କହିଲା, 'ମା, କଥାଟିଏ ପଚାରିବାକୁ ଥିଲା ।'

'ଶୀଘ୍ର କୁହ ।'

'ମା, ସେ କ'ଣ ମରିଯାଇପାରେ ?'

'କି ଅଦ୍ଭୁତ କଥା ! ମରିବ କାହିଁକି ?'

'ଯଦି ମରିଯାଏ ? ଧରନ୍ତୁ, ମରିଯାଏ ଯଦି ? ଆପଣ କଥା ଦେଉଚନ୍ତି ତ ମରିବନି ବୋଲି ?'

'ଇଏ କି ନୂଆ ପାଲା ? ମୁଁ କି କଥା ଦେବି ? ସାଧାରଣତଃ କେହି ମରନ୍ତିନି ଏଥିରେ । ତା ବୋଲି ମୁଁ କ'ଣ ଭଗବାନ ହେଇଚି ।'

ହାତ ଇସାରାରେ ତାକୁ ଆଡ଼େଇ ଦେଇ ପଶିଗଲା ବେଳେ କବାଟରେ ହାତ ଦେଇ ପ୍ରାୟ ବାଟ ଓଗାଳିଦେଲା ଲୋକଟି, ହାତ ଯୋଡ଼ିଲା, 'ମା, ପଦେ କହିଦିଅନ୍ତୁ । ସେ ପିଲାଟା କ'ଣ ମୋଓରି ?'

'ମୁଁ ସେ ବିଷୟରେ ଆଦୌ କିଛି କହିପାରିବିନି ।'

'କହିଦିଅନ୍ତୁ ମା । ଯାହାହେଲେ ପଦେ କହିଦିଅନ୍ତୁ । ଆପଣ ଯଦି ଥରେ କହିଦେବେ ପିଲାଟା ମୋଓରି ବୋଲି, ଆଉ କିଛି ଦରକାର ହେବନି ।'

ଅମିତା ଦାନ୍ତଚିପି ତା ମୁହଁକୁ କଟମଟ ଅନେଇଲା, 'ଦେଖ, ସେଇଟା ତମ ସମସ୍ୟା । ମୋତେ ବିରକ୍ତ କରନି । ଯିବାକୁ ଦିଅ ।'

ଅପରେସନ ଟେବୁଲ୍ ଉପରେ ଅଚେତ ସ୍ତ୍ରୀ ଲୋକଟି । ପ୍ରସ୍ତୁତ ହେଇ କାମ ଆରମ୍ଭ କରିବାକୁ ଯାଉଚି, କବାଟ ଧଡ଼ଧଡ଼ ହେଲା । ଧାଈ କହିଲା, 'ମାଡ଼ାମ୍, ତା ସ୍ୱାମୀ ।'

'ତାକୁ ବାହାର କଲ ଏଠୁ । ଚପରାସୀକୁ ଡାକ ।'

କବାଟ ପ୍ରବଳ ଧଡ଼ଧଡ଼ ହେଲା । ଅଗତ୍ୟା ହାତରୁ ଗ୍ଲୋଭସ୍ କାଢ଼ି କବାଟ ପାଖକୁ ଗଲା ଅମିତା ।

'କ'ଣ ଚାହୁଁଚ ତମେ ?'

'ମା, ତାକୁ ଛାଡ଼ିଦିଅନ୍ତୁ । ବିଚାରୀକୁ ଛାଡ଼ିଦିଅନ୍ତୁ ।'

'ମାନେ ?'

'ମୁଁ ତାକୁ ମାଫ୍ କରିଦେଉଛି । ଏଇଥରକ ।'

'ମୁଁ ବୁଝିପାରୁନି । ତା ପେଟଧୁଆ ହେବନି କହୁଛ, ନା କ'ଣ ?'

'ନାଇଁ ମା, ପିଲାଟା ରହୁ । ଜନ୍ମ ହେଉ । ଏଇଥରକ ମୁଁ ତାକୁ ମାଫ୍ କରିଦେଲି ।'

ଅମିତା ତା ମୁହଁକୁ ଅନେଇ ରହିଲା ବଲବଲ କରି । ସେଇଠୁ ପଚାରିଲା, 'ପିଲାଟା ଜନ୍ମହେଲେ ତମେ ତାକୁ ରଖିବ, ପାଳିବ କହୁଚ ତ ?'

'ପିଲା ତ ମା' ଠାକୁରଙ୍କର । ଯାହା ପାପ ସିନା ସେ ଭୋଗିବ । ରାଣ ନିୟମ ତ ସେ ଖାଇଚି, ଆପଣ ଦେଖିଲେ ।'

କିଛି ସମୟ ପରେ ଘର-ଫେରନ୍ତା ବାଟରେ ସେଇ ବାରଣ୍ଡା ଦେଇ ଗଲାବେଳେ ଅମିତା ଦେଖିଲା ପୁରୁଷଟି ବସିଚି ଟ୍ରଲି ପାଖେ, ତା ସ୍ତ୍ରୀ ଉଠିବା ଯାଏଁ ଅପେକ୍ଷା କରିଚି । ସ୍ତ୍ରୀର ନିଶା ପୂରା କଟିଲେ ପାଦରେ ଚାଲି କେଇକୋଶ ଦୂର ଗାଆଁକୁ ଫେରିବାକୁ ହେବ ତାକୁ । ଅମିତା ଟିକିଏ ଅଟକିଗଲା, ସ୍ତ୍ରୀ ଲୋକଟି ନିଶ୍ଚିନ୍ତରେ ଶୋଇଚି । ସେ ଉଠିଲାପରେ ନିଶ୍ଚେ ଆଉ ଗୋଟିଏ ଦୃଶ୍ୟ ଅଭିନୀତ ହେବ ଦୁହିଁଙ୍କ ଭିତରେ, କେଜାଣି ସହଜ ବୁଝାମଣାର, କି କୁଣ୍ଠିତ ଆତ୍ମତ୍ୟାଗ ଓ କୃତାର୍ଥ ଭାବର ।

ପୁରୁଷଟି ଅକାରଣ ଅମିତାକୁ ହାତ ଯୋଡ଼ିଲା ଗଦ୍‌ଗଦ ଭାବରେ; ସତେକି ସେ ତା'ର ସମସ୍ୟାର ସମାଧାନ କରିଦେଇଚି । ଅମିତା ପଚାରିଲା, 'ଯଦି ତମେ ନିଜେ କିଛି ଠିକ୍‌କରି ଜାଣିନ, ମିଛରେ କାହିଁକି ବିଚାରୀ ପଛରେ ପଡ଼ିଥିଲ, –ଖାଲି ସନ୍ଦେହରେ ?'

ଲୋକଟି ଗମ୍ଭୀର ହୋଇପଡ଼ିଲା, କହିଲା, 'ମୋତେ ଦୋଷ ଦିଅନାଇଁ ମା । ଯାକୁ କମ୍ ଖଣ୍ଡେ ବୋଲି ଭାବିଚ କି ? ତେବେ, ମୁଁ ଭାବିଲି, ମରଦ ଯେତେହେଲେ ହେଲା ମାଲିକ, ଥରେଅଧେ ଭୁଲ୍‌ଚୁକ୍ ମାଫ୍ କରିବା କଥା ନା ନାହିଁ ?'

ଅମିତା ଅନେଇଲା ଆତ୍ମାଭିମାନରେ ନିଶ୍ଚିତ ସେଇ ମୁହଁଟିକୁ । ବାରଣ୍ଡା ତଳକୁ ଗୋଡ଼ ବଢ଼େଇଲା ବେଳକୁ ତା'ର ଖିଆଲ ହେଲା, ଖରାଦିନ ଆସିବାକୁ ଆଉ ବେଶୀଦିନ ନାହିଁ । ପବନ ପିଟୁଚି, ଶୁଖିଲା ପତ୍ର ବଉଲଗୁଣ୍ଡି ମିଶା ବଣୁଆ ପବନ । ହତା ଭିତରର ପୂରା ନଣ୍ଡା ହେଇଯାଇଥିବା ମହୁଲଗଛର ଟିକିଟିକି ଥୁଣ୍ଟା ଅଗମାନ ଗଜୁରି ଆସିଲେଣି ଆକାଶକୁ ମୁହଁ କରିଥିବା ଶହ ଶହ ମାଟିଆରଙ୍ଗର କଢ଼ରେ । ଗତବର୍ଷ

ଏମିତି ସମୟରେ ରୋହିତ ଆସିଥିଲା । ଏମିତି ବେଳରେ ଘରକୁ ଥକାପାଦରେ ଫେରି କବାଟ ଦେଇ ସାରିଲା ବେଳକୁ ଠକ୍ ଠକ୍ ଆୱାଜ ଶୁଣି ସେ ଦିନେ କବାଟ ଖୋଲିଥିଲା । କ'ଣ ଗୋଟାଏ ମାଗିବାକୁ ଆସିଥିଲା ରୋହିତ, ବହିଟିଏ ? ମନେନାହିଁ ।

କିଛି ମନେ ଅଛି, କିଛି ନାହିଁ, କ'ଣ ସବୁ ଗପ କହିଥିଲେ ସେ ଦିହେଁ, ସେଦିନ ଓ ତା'ପରେ ଦିନ ପରେ ଦିନ । ଡାକ୍ତରଖାନା ଗହଳ ଚହଳ ଭିତରେ ବି ଏକୁଟିଆ ସେ ଦିହେଁ ଓ ପୁଣି ବାହାରର ଧୂଳିଝଡ଼ ଖଣ୍ଡିଆଭୂତକୁ କବାଟ କିଳିଦେଇ ଘରେ । କେମିତି ପାଦେ ପାଦେ ଆଗେଇ ଆସିଥିଲେ, ଆହୁରି ଆଗେଇ ପାଦ ପକେଇଥିଲେ ଏକ ଆରେକଙ୍କ ଭିତରର ପୃଥିବୀକୁ । କେମିତି ନିଜେ ନଜାଣିଥିବା ତା ଭିତର କୋଠରିମାନ ଗୋଟି ଗୋଟି ହେଇ ଫିଟି ଯାଇଥିଲା । ଅଣନିଃଶ୍ୱାସୀପଣ ଅଭ୍ୟାସରେ ପଡ଼ିଯାଇଥିବା ସେ ଉଦ୍‌ମୁଦା ଗୁମ୍ଫା ପରି ଘରଟା ଭିତରେ ଅଚାନକ ବାସ୍ନା ବଣପବନ ଖେଳିଯାଇଥିଲା । ମନେ ଅଛି ।

ରୋହିତ ବଦଳି ହୋଇ ଚାଲିଗଲା । ତା ପରିବାରକୁ ସହରରେ ଛାଡ଼ି ସେ ବି ଆସିଥିଲା । ଆସିଲାଦିନୁ ରୋହିତର ଶଶୁର ଚେଷ୍ଟାକରୁଥିଲେ ଏ ଅପନ୍ତରା ପୋଷ୍ଟିଂରୁ ତାର ବଦଳି କରାଇବାକୁ । ଅମିତା ନିଜେ ବି ତ ଆସିଲା ଦିନୁ ଅନେଇ ବସିଥିଲା ତା ନିଜ ବଦଳିକୁ । ଯିବାବେଳକୁ ଦୁହେଁ ଦୁହିଁଙ୍କ ଆଖିରେ ଦେଖିଥିଲେ ଛାଡ଼ିବାକୁ ନାହିଁ କରୁଥିବା ଆକୁଳ ଭାବଟିଏ, ବାନ୍ଧିରଖିବାକୁ ଦୁରୂହ ଇଚ୍ଛାଟିଏ । ତଥାପି ସେହିକ୍ଷଣି ଦିହେଁ ପ୍ରସ୍ତୁତ ହେଇଯାଇଥିଲେ, ଛାଡ଼ିଯିବାକୁ, ଆରେକକୁ ଯିବାକୁ ଦେବାକୁ ।

ଦିହେଁ ଜାଣିଥିଲେ, ନିଜ ଭିତରେ ଜାଗାଟିଏ ରହିଥିବ ଗୁଡ଼ିଏ ଚିତ୍ରରେ ସଜାହେଇ, କେହି ଦେଖିବେ ନାହିଁ ତାକୁ କେବେ ।

ଏବେ ଦି' ଫର୍ଲଙ୍ଗ ବାଟ ନିଶ୍ଚିତ ପାଦରେ ଚାଲି ଅମିତା ଯିବ, ଆସୁଥିବା ଖରାଦିନର ନୂଆ ସମ୍ପଦ ସବୁ ଦେଖି ଦେଖି । ତା ପରେ ତାଲା ଖୋଲିବ, ତା ପାଇଁ ଅପେକ୍ଷା କରିଥିବା ଖାଲି କ୍ୱାଟର୍ସର । ବା ଛୁଟିନେଇ ଘରକୁ ଯିବ । ହୁଏତ ତାକୁ ବଦଳି ମିଳିଯିବ ସତରେ, ପ୍ରଦୀପ୍ତ କରାଇଦେବ ବଦଳି । ଏମିତି ସେ ରହିବ ତା'ର କ୍ୱାଟର୍ସର ସାମୟିକ ସଂସାରରେ ବା ତା ନିଜ ଘରେ, ଯେଉଁଠି ପ୍ରଦୀପ୍ତ ଥିବ, ପପୁ ଥିବ, ତା ସଜଡ଼ା ଘର ଥିବ, ବନ୍ଧୁପରିଜନ ଥିବେ । ଆଉ ସବୁବେଳେ ତା ଭିତରେ ଥିବ ଶୁନ୍‌ଶାନ୍ ପୃଥିବୀଟିଏ, ଯେଉଁଠି ସେ ଶୋଇପାରେ, ଚେଇଁପାରେ, ଅବା ଇଚ୍ଛାକଲେ ନେଇ ଆସିପାରେ ବାହାରର ଦମକାଏ ପବନ ତହିଁରେ ଗଛବୃକ୍ଷକୁ ଝଙ୍କାଇ ଦେବାକୁ । ଝରକା ବାହାରେ ବସିଥିବା ଏକୁଟିଆ ଚଢ଼େଇଟିଏକୁ ଡାକି ଆଣି ନିଜ ଭିତରର ଆକାଶରେ ଉଡ଼ାଇ ଦେଇପାରେ, ବା ତା ନିଜ ପୃଥିବୀର ଅତିଥି କରି ଆଣିପାରେ ହାତର ଖୋଲା ଉପନ୍ୟାସର ଚରିତ୍ରଟିଏକୁ ।

ଠଠଠ

# ପାତକୀ

ବାରଣ୍ଡା ବଡ଼ ବେସିନ୍ ପାଖରେ ଠିଆ ହେଇ ଦାନ୍ତ ଘଷୁଥାଏ ଶିଲୁ । ତା ନିଦ ପୂରା ଛାଡ଼ି ନଥାଏ, କେବେହେଲେ ତା ନିଦ ଛାଡ଼େନି ଦାନ୍ତ ଘଷୁଥିବା ଯାଏ, ଦୁଧ ପିଇବା ଯାଏ । ଏମିତିକି ପଢ଼ିବସିବା ଯାଏ । ସେଥିଲାଗି ସେ ଦାନ୍ତ ଘଷୁ ଘଷୁ ଆଖି ବୁଜି ଦେଇଥାଏ, ଶୋଇବା ସୁଖ ଟିକିଏ ପାଇବା ଲାଗି, ପୁଣି ମନେ ପଡ଼େ ତଳପାଟି ସରିଲା ଏଥର ଉପର ପାଟିର ପାଳି, ବାଁ କଡ଼ ନା ଡାହାଣ କଡ଼ ଆଗ ? ପୁଣି ଗୋଳିଆପୋଳିଆ ଲାଗେ—ଉପର ପାଟି ତ ଘଷି ସାରିଥିଲି ନା କଣ ? ଆଖି ମିଟିକାଇ ଭାବେ, ଆଉ ଆଖି ବୁଜିବିନି । ଚାରିଆଡ଼କୁ ଭଲ କରି ଅନେଇଦେଲେ ନିଦ ଛାଡ଼ିଯିବ । ଦୂରରେ ବାରିପାଖ ସାନ ଫାଟକ ପାଖରେ ବୁଲାକୁକୁରଗୁଡ଼ାଏ ମାଡ଼ ଗୋଳ ଲାଗିଛନ୍ତି, ଘାଉଁ ଘାଉଁ ହେଉଛନ୍ତି ।

ଟାଣ ସ୍ୱରରେ ତାଗିଦ୍ ଶୁଭିଲା ପଛ ପାଖରୁ—''ମଠେଇ ମଠେଇ ଘଷୁଥା ଦାନ୍ତ ଘଣ୍ଟାଏ କାଳ । ଶୀଘ୍ର ମୁହଁ ଧୋଇ ପଢ଼ିବସୁଚୁ ନା ନାହିଁ ।''

ଶିଲୁ ହାତ ଫୂର୍ତ୍ତି କଲା, ଗେଟ୍ ଆଡୁ କୁକୁରମାନଙ୍କ ଗର୍ଜନ ବଢ଼ିଗଲା ପରି ଶୁଭୁଚି । କଣେଇ ଦେଖିଲା, ଚାରିପାଞ୍ଚଟା କୁକୁରଙ୍କର ଭାଉ ଭାଉ କ୍ୟାଉଁ କ୍ୟାଉଁ ଚଢ଼ାଚଢ଼ି ଖେଦାଖେଦି, ଯୁଦ୍ଧ ଲାଗିଚି ରୀତିମତ । ଆମ ବ୍ରାଉନିଟା କୁଆଡ଼େ ଗଲା ? ଏଇଠି ବୁଲୁଥିଲା ତ ଉଠିଲା ବେଳେ, ବୁଲୁ ଲାଗୁଥିଲା ତା ପଛରେ । ଶିଲୁ ପାଖକୁ ଗଲାକ୍ଷଣି ପାଟିକଲା, ''ନାଇଁ ମୁଁ ଆଗ ଧରିଚି ତାକୁ, ତୁ ଦାନ୍ତ ଘଷିନୁ ଏ ଯାଏ, ମୁଁ ଘଷି ସାରିଚି ।'' ଶିଲୁ ପରାସ୍ତ ହେଇ ବେସିନ୍ ପାଖକୁ ଆସୁ ଆସୁ ଚଟ୍‌କିନି ମନେ ପଡ଼ିଗଲା କୁକୁଡ଼ାଘର । ସେଇଠୁ ସେ କିଛି ନକହି ଦଉଡ଼ିଲା ବାରିପାଖକୁ । ବୁଲୁ ବସିଥାଉ ନୂଆ କୁକୁରଛୁଆକୁ ନେଇ । ଶିଲୁ ଅଣ୍ଡା ନେଇ ଆସି ତାକୁ ଚମକାଇ ଦେବ । ହେଲେ ସେଠି ଯାଇ ପହଞ୍ଚିବା ଆଗରୁ ଉଦିଆ ଦାନ୍ତ ଦେଖାଇ କହିଲା—''ଆଜି ଅଣ୍ଡା ତିନିଟା ଥିଲା, ମୁଁ ନେଇ ଆସିଲିଣି ।''

ଶିଲୁ କୁକୁଡ଼ା ଘର ଆଡ଼େ ଅନେଇଲା, ତିନିଟା କୁକୁଡ଼ା ଭିନ୍ନ ଭିନ୍ନ ସମୟରେ ତାଳ ଦେଇ ଅଣ୍ଡାଦିଆ ପରବର୍ତ୍ତୀ ଗୀତ ଗାଉଛନ୍ତି । ତା ସ୍ୱର ଫୁଟିଲା

ରାଗରେ—''ତୋତେ କିଏ କହୁଥିଲା ... ?'' ତା କଥା ନସରୁଣୁ ଉଦିଆ ଆଉ ଟିକିଏ ଓସାରରେ ହଳଦିଆ ଦାନ୍ତ ଦେଖାଇ କହିଲା—''ମୋତେ ମା' କହିଚନ୍ତି ଅଣ୍ଡା ଆଣିବାକୁ । ତେମେ ଯାଉନ ପଢ଼ିବ ।''

ଶିଲୁର ହାତ ରହିଯାଉଚି ଦାନ୍ତ ଘଷୁଘଷୁ । କୁକୁର ଗର୍ଜନ କାହିଁରେ କ'ଣ ଶୁଭୁଚି । ଘାଉଁ ଘାଉଁ ପଲ ଭିଡ଼ାଓଟରା ହେଇ ଲାଗିଚନ୍ତି ଏପାଖ ଖଣ୍ଡେବାଟ ତ ପୁଣି ସେପାଖ । ସରୁ ଗୋଟାଏ କ୍ୟାଉଁ କ୍ୟାଉଁ ଶୁଭୁଚି ଗୋଳ ଭିତରୁ । ଗୋଡ଼ ଟିପରେ ଠିଆହେଲେ ବି ଝରକା ଜାଲିବାଟେ ଠିକ୍ ଦେଖାଯାଉନି, ଗଛ ବୁଦା କଣ ସବୁ ଆଡ଼ ହେଉଚି । ବ୍ରାଉନିଟା କାହିଁ ? —''ଶିଲୁ ହେଇଟି, ଦୁଧ ରଖିଦେଲି । ମାଛି ପଡ଼ିଲେ ମୋର ଦୋଷ ନାଇଁ । ଶୀଘ୍ର ମୁହଁ ଧୋଇ ପକେଇ ପିଇଦିଅ ।''

ଶିଲୁ ତରତରରେ ମୁହଁ ଧୋଇଲା । ସରୁ କ୍ୟାଉଁ କ୍ୟାଉଁ ଶୁଭୁଚି କୁକୁର ବ୍ୟୂହ ଭିତରୁ, ନିଃସନ୍ଦେହରେ କୁକୁର ଛୁଆଟିଏ । ଆଜିକାଲି ରାସ୍ତାରେ କେତେ କୁକୁର ଛୁଆ । ସାମ୍ନା ରାସ୍ତା ମୋଡ଼ ପୋଲତଳେ କୁକୁରଟିଏ ପାଞ୍ଚଟା ଛୁଆ ଦେଇଥିଲା । ଶିଲୁ କିନ୍ତୁ ନିଜ ଅଭିଜ୍ଞତାରୁ ଜାଣିଚି, ଯେତେ ଗୁଲୁଗୁଲୁ ଦିଶୁଥିଲେ ବି ରାସ୍ତାର କୁକୁର ଛୁଆ ଅସନା । ତାକୁ ଦୁଧ ଦେବା କଥା ନୁହେଁ । ଗେଲ କଲେ ରୋଗ ହୁଏ । ତାକୁ ଆହା କରିବାର ବି କିଛି ଦରକାର ନାହିଁ । ବଡ଼ ହେଲେ ବୁଲାକୁକୁର ହେବ । ମେହେନ୍ତରମାନେ ଜାଲି ଗାଡ଼ିରେ ଧରିନେଇ ବିଷ ଦେଇ ମାରିଦେବେ ।

ଦୁଧ ଗିଲାସର ଫାନ୍ଦ ଉପର ଦେଇ ନଜର ଚାଲିଯାଉଚି ବାହାରକୁ । ଘାଉଁ ଘାଉଁ କ୍ୟାଉଁ କ୍ୟାଉଁ ଅପସରି ଗଲାଣି ଖଣ୍ଡେଦୂର । ରାସ୍ତାର କୁକୁର ଛୁଆ । ଷ୍ଟେସନ୍‌ରେ ଝିଅଟିଏ ଲଙ୍ଗଳା ଛୁଆଟିଏ କାଖେଇ ଭିକ ମାଗୁଥିଲା । ଛୁଆଟାର ମୁଣ୍ଡ ଏତେ ବଡ଼ ଯେ ସେ ତାକୁ ସିଧା ରଖିପାରୁନଥାଏ, ଗୋଟାଏ ପଟକୁ ଢଳି ଯାଇଥାଏ । ସରୁ ସରୁ ଲମ୍ବା ଲମ୍ବା ହାତ ଗୋଡ଼, ପେଟଟି ଗୋଲ୍, ଆଣ୍ଠୁ ଦୁଇଟି ଗୋଲ ଗୋଲ । ମା କହିଲେ—'ସିଆଡ଼େ ଚାହାଁନା ଶିଲୁ ।' ଶିଲୁ କଥା ମାନିବାକୁ ଚେଷ୍ଟାକରେ । ଏଥର ମା'ଙ୍କ ସ୍ୱର ଶୁଭିଲା, 'ଆରେ, ସରିଲା ଦୁଧପିଆ ? ଠିଆ ହୋଇଥା ଗିଲାସ ଧରି । ସାରୁଚୁ ନା ନାଇଁ ?'

ଶିଲୁ ଗିଲାସ ରଖିଦେଇ ଧାଇଁଗଲା ପଢ଼ାଘରକୁ । ଭାବିବି ନାଇଁ ସେସବୁ । ମନା । ବାହାର ବାରଣ୍ଡାର ଗୋଟିଏ କଡ଼ରେ ବାପାଙ୍କ ଅଫିସ୍ ଘର । ବାରଣ୍ଡାରେ ମିନିଟିଏ ଠିଆ ହେଇ ଶିଲୁ ବଗିଚାକୁ ଚାହିଁଲା । କାଲି ସଞ୍ଜବେଳେ ସବୁଯାକ ପିଜୁଳି ଟାଣ ଥିଲା । ବଡ଼ ଟାଣୁଆ, କଷା । ଯୋଉ ଗଛର ପିଜୁଳି ଟିକି ଅମୃତଭଣ୍ଡା ପରି ଦିଶେ, ତାର ଡେମ୍ଫଆଡୁ ସରୁ ଅଂଶଟା ଆଗ ଫିକା ପଡ଼ିଆସେ, ସେଇ ପାଖରୁ ଖଣ୍ଡେ

କାମୁଡ଼ିଦେଲେ ଫସ୍ କିନା ଭାଙ୍ଗିଯାଏ । କଷା ମିଠା ପଡ଼ିଆସୁଥାଏ, ଭିତର ମଞ୍ଜି ଆଉ ଶସ ନାଲି ପଡ଼ିଆସୁଥାଏ । ମା କହନ୍ତି—"କାହିଁକି କଞ୍ଚା ପିଜୁଳି ଗୁଡ଼ା ତୋଳି ନଷ୍ଟ କରିଦିଅରେ ? ପାଚି ସାରିଲେ ଖାଇଲେ ହୁଅନ୍ତା ନାହିଁ ?" ଉପର ଡାଳମାନଙ୍କରେ ଖଣ୍ଡିଆ ବାଦୁଡ଼ିଖିଆ ପିଜୁଳି ସବୁ ଝୁଲୁଥାଏ, ନାଲି ପେଟ ଦେଖାଇ ଖତେଇ ହେଉଥାଏ ।

ବଗିଚାକୁ ଏବେ ଯିବା ମନା । ଚାରିଟା ବେଳେ ଯାଇ । ବାରଣ୍ଡା କଡ଼ ଅଫିସ୍ ଘରକୁ ଯାଉଯାଉ ଶିଲୁ ଭାବିଲା ମା ତାଙ୍କ ପିଲାଦିନେ ପିଜୁଳି କେମିତି ଖାଉଥିଲେ କେବେ କହିଚନ୍ତି କି ? ବୋଧେ ସବୁଯାକ ପିଜୁଳି ପାଚିଲେ ମାଳୀ ତୋଳି ଆଣିବା କଥା, ଆଉ ସକାଳ ସଞ୍ଜ ଦୁଇଟି ଲେଖାଁ ପିଲାଙ୍କ ହାତରେ ଦିଆଯିବା କଥା, ଯେମିତି କଦଳୀ କାନ୍ଦି ପାଚିଲେ କରାଯାଏ ।

ଅଫିସ୍‌ଘରେ ଗୋଟିଏ କଣରେ ଡେସ୍କଟିଏ, ତା ଭିତରେ ବହିସିଲଟ । ଡେସ୍କ ଉପରେ ସତରଞ୍ଜିଟିଏ ଚଉତା ହେଇ ରଖାଯାଇଥାଏ, ମାଷ୍ଟର ଆସିଲେ ବିଛାହୁଏ । ସତରଞ୍ଜି ତଳେ ରଖି ଡେସ୍କ ଖୋଲି ଶିଲୁ ଖାତା କଲମ କାଢ଼ିଲା । ମାଷ୍ଟରଙ୍କ ଘରକାମ କରିବାକୁ ହେବ । ହସ୍ତାକ୍ଷର, ଗଣିତ । ହସ୍ତାକ୍ଷର ପ୍ରଥମ ଧାଡ଼ିରେ ଲେଖା—ପାଣି ପିଇବ ଛାଣି, ପଇସା ନେବ ଗଣି । ପୃଷ୍ଠାସାରା ଆଠ ଧାଡ଼ି ଲେଖିବାକୁ ହେବ, ଥରକୁ ଥର, ଗୋଲ ଗୋଲ ଅକ୍ଷର ବସେଇ ବସେଇ । ଅନ୍ୟ କାମରେ ସିନା ମଠ ହେଲେ ଗାଳି ହୁଏ, ଏଥିରେ କିନ୍ତୁ ତରବର ଚଳିବ ନାଇଁ । ମଠେଇ ମଠେଇ ତୃତୀୟ ଧାଡ଼ିଯାଏଁ ପହଞ୍ଚିଲା ବେଳକୁ ଧାଡ଼ିର ଅର୍ଥ ଉଭେଇ ଯାଇଥାଏ । 'ଇ' ଟି ଜନ୍ତୁଟିଏ । ତା ପିଠି ଉପରେ ମୁରୁଜ ଟିକିଏନାକୁ କରିଦିଏ ସେ । ତା ଲାଞ୍ଜ ଆଗରେ ତିନି ଚାରିଟି ଗାର ଟାଣି ଚଅଁରଟିଏ । ପ୍ରତି ଅକ୍ଷର ଗୋଟିଏ ଲେଖାଁ ଜୀବ ସତେକି ! ଚାଲୁଥାନ୍ତି ଲାଇନ୍ ଉପରେ, ସର୍କସ୍ ଜନ୍ତୁମାନେ ବ୍ୟାଣ୍ଡ ବାଜା ସଙ୍ଗେ ସହରରାସ୍ତା ପରିକ୍ରମା କଲାପରି । ଦୁଆତରେ କଲମ ବୁଡ଼ାଇ ଆଣୁ ଆଣୁ ନିବ୍‌ରେ ସ୍ୟାହି ବେଶୀ ରହିଗଲା ନା କଣ, ଧପ୍ କିନି ପଡ଼ିଲା ଟୋପାଏ 'ଇ' କଡ଼ରେ । ସ୍ୟାହି ଟୋପାକରେ କଲମ ପଛପାଖ ଗୋଜିଆରେ ଚାପି ଟାଣିଦେଲେ କେତେ କଥା ତିଆରି ହେଇଯାଏ । ଚାରିଆଡ଼କୁ ସାନସାନ ଗାର ଟାଣିଲେ ସୂର୍ଯ୍ୟ, ଦିପାଖକୁ ତିନିଟା ଲେଖାଏଁ ହୁକ୍ ପରି ତଳମୁହାଁ ବଙ୍କାଗାର ଟାଣିଲେ ବୁଢ଼ିଆଣୀ । ମା ମାର୍ଗଶିର ଗୁରୁବାରରେ କେତେ ରକମ ଚିତା ଆଙ୍କନ୍ତି । ଅଲପିନା । ମା' ଗୋଟିଏ ଅଲପିନା ଆରମ୍ଭ କଲାବେଳୁ ସେ ଚିହ୍ନିପାରେ କୋଉ ଗୋଟିକ ସେ କରିବାକୁ ଯାଉଛନ୍ତି । ଧଳା ଗିନାରେ ତାଙ୍କ ହାତ ବୁଡ଼େ, କଅଁଳ କନା ଟିକିଏ ଥାଏ ଆଙ୍ଗୁଠି ଅଗରେ, ତୁଳା ମେଞ୍ଚାଏ ପରି । ଗିନାରୁ ହାତକାଢ଼ି ଚଟାଣକୁ

ଛୁଏଁ ମୁଦିପିନ୍ଧା ଆଙ୍ଗୁଠି, ଦେଖୁ ଦେଖୁ ସଫା ଚଟାଣ ଉପରେ ଉଭା ହେଇଯାଏ କେତେ ସୁନ୍ଦର ଛବି । କାଳି ଟୋପାକ ଶୁଖିଗଲା ତା ଚାରିପାଖେ ଗାର ଟାଣୁଟାଣୁ । ତା'ଉପରେ ଆଉ ଟିକିଏନାକୁ କାଳି ଝାଡ଼ିଦେବାକୁ ଯାଉଯାଉ ଗଲା ଯା, ଥପ୍ ଥପ୍ ଦୁଇ ଚାରିବୁନ୍ଦା କାଳି ପଡ଼ିଗଲା ପୃଷ୍ଠା ଉପରେ । ସାର୍ ରାଗିବେ, ଖାତା ଅସନା ହେଲା । ତଥାପି ସେ ରୋକି ପାରିଲା ନାଇଁ ନିଜକୁ । ଗୋଟିଏ ଛୋଟିଆ ବୁନ୍ଦାରେ ଚିତ୍ର କରିଦିଏଁ, ବାକି ତିନିଟା ଥାଉ ସେମିତି ଶୁଖିଯାଉ । ସାର୍‌ଙ୍କୁ କହିବି ପଡ଼ିଗଲା ଆପେ, ବୁଲୁ ପେଲିଦେଲା ମୋ ହାତକୁ । କାଳି ବୁନ୍ଦାକୁ କଲମ ପଛ ଟାଣିଦେଲା ଗୋଲ୍ ଗୋଲ୍ । ଏଇଟା ଗୋଟାଏ ଶଙ୍ଖ ।

ପାଟିଗୋଳ ଶୁଭୁଚି ରୋଷେଇ ଘର ଆଡୁ । ମା' ବଡ଼ପାଟିରେ କଣ କହୁଚନ୍ତି ଉଦିଆକୁ । ଗାଳି ଖାଉଚି ଉଦିଆ ନିଶ୍ଚେ, ବଡ଼ପାଟିରେ କ'ଣ ସଫେଇ ଦେଉଚି । ମା'ଙ୍କ ସ୍ୱର ଅବାଗିଆ ଶୁଭୁଚି । ଭଙ୍ଗା ଭଙ୍ଗା, କାନ୍ଦକାନ୍ଦ—'କହୁଥିଲି ଆଣ ନାହିଁ ଏସବୁ, ମୋ ଦେଇ ଏସବୁ କାମ ହୁଏ ନାଇଁ, ଏଣେ ସହିହୁଏ ନାଇଁ ।' ଗୁର ତାର ଫଟାକଂସା ପରି ସ୍ୱରରେ ସଭିଙ୍କୁ ଟପି ପାଟିକରୁଚି—'ହେଇପରା ସକାଳୁ ଗିନାରେ ଦୁଧ ଦେଲି ପିଇଲା, ଏଇଠି ବୁଲୁଥିଲା କେତେ ସୁନ୍ଦର ଲାଞ୍ଜ ହଲେଇ ହଲେଇ । ମୁଁ କହିଲି ଉଦିଆ ଦେଖୁଥିବୁ, କବାଟ ବନ୍ଦ ରଖିଥିବୁ ... ।'

ଉଦିଆର ସ୍ୱର ଏଥର ଗୁରକୁ ଟପିଯାଉଚି, କିଛି ବୁଝାପଡୁନି ।

ଶିଲୁର ଛାତି ଭିତର ଦେଇ କାଲୁଆ ପବନଟାଏ ବହିଗଲା । କଲମ ସେଇଠି ଛାଡ଼ି ଦେଇ ସେ ଦଉଡ଼ିଗଲା ଭିତରକୁ ।

ମା' ଖାଇବା ଟେବୁଲ ପାଖରେ ଚଉକି ଉପରକୁ ଗୋଟିଏ ଆଣ୍ଠୁ ଟେକି ବସିଥାନ୍ତି, ନଖ ଛିଣ୍ଡାଉଥାନ୍ତି ଦାନ୍ତରେ । ପାଖରେ ଉଦିଆ, ଗୁର, ନାନୀ, ବୁଲୁ ।

''ଗୁର ରୋଷଘର ପଛକବାଟ ଖୋଲା ରଖିଥିଲା ...''

''ଉଦିଆ ତାକୁ ବୁଲେଇବାକୁ ନେଇଥିଲା ...''

ମା ଚଟାଣକୁ ଅନେଇ ରହି ଭ୍ରୁକୁଞ୍ଚେଇ ମଝି ମଝିରେ ନଖକୁ କାମୁଡ଼ିବା ଛାଡ଼ି ଆର ହାତରେ ଖୁଣ୍ଟୁଥାନ୍ତି, କହୁଥାନ୍ତି—'ମନା କରୁଥିଲି ମୂଳରୁ । କିଏ ଶୁଣିଲାଣି ମୋ କଥା ଯେ ଶୁଣିବ ?'

ଜାଲି ଝରକା ପାଖରୁ ବାରି ବାଡ଼ ସେପାରିକୁ ଅନେଇଲା ଶିଲୁ । ନାଇଁ ନାଇଁ ସେ ତ ରାସ୍ତାର ବୁଲାକୁକୁର ଛୁଆ ଥିଲା । ନହେଲେ ପଦାରେ ଥାଆନ୍ତା କାହିଁକି ? ଶିଲୁ ଦାନ୍ତ ଘଷି ଦାନ୍ତ ଘଷି । ପାଟିଯାକ ଫେଣ ବଜବଜ । ଦୁଧରେ ମାଛି ପଡ଼ିବ । ମାଷ୍ଟ୍ରଙ୍କ

ହସ୍ତାକ୍ଷର, ଗଣିତ, ଅଣ୍ଡାଦିଆ କୁକୁଡ଼ାର ଖଦେଇହେଲା ଗୀତ। କଥାଟାଏ ପଚାରି ପାରିଥାନ୍ତି—ଆମ ବ୍ରାଉନି କାହିଁ ? ଘରେ ଅଛି ତ ?

ଉଦିଆର ସ୍ୱର ବାରିପାଖରୁ ଶୁଭିଲାଣି, ଏବେ ଗୁରୁ ନାକ ସୁଁ-ସୁଁ ପୋଛି ଭିତରକୁ ପଶିଆସୁଚି। ମା ପାଟିକଲେ—'ଥାଉ ଥାଉ, ଆଣନାଇଁ ତାକୁ ଇଆଡ଼େ। ଯାଅ ମେହନ୍ତରକୁ ଡାକ, ପକେଇଦେଇ ଆସୁ।' ଆଖି ପୋଛୁଛନ୍ତି କାନିରେ। 'କହୁଥିଲି ଏତେ ଝଞ୍ଜାଳ ପାରିବି ନାହିଁ।'

ଶିଲୁ ଶେଷରେ ମୁହଁ ଖୋଲି ପଚାରି ଦେଉଚି—'ମା, ବ୍ରାଉନିର କ'ଣ ହେଲା ?'

କାନିରୁ ମୁହଁ ଟେକି ମା ତାକୁ ଚାହୁଁଚନ୍ତି। ଶିଲୁ ଜାଣିସାରିଥିବା କଥାଟି ଆଉ ବାଟ ନପାଇ ସିଧା ସାମ୍ନାରେ ଦାନ୍ତ ନଖ ଆଖି ଦେଖାଇ ଠିଆ ହେଉଚି।

—''ମାରିଦେଲେରେ ତାକୁ ବୁଲାକୁକୁରମାନେ, ତାକୁ କାମୁଡ଼ି ବିଦାରି ମାରିଦେଲେ। କିଏ ତାକୁ ଛାଡ଼ିଦେଲା ବାହାରେ ସକାଳୁ ସକାଳୁ, କାହାରି ନଜରରେ ଟିକିଏ ପଡ଼ିଲା ନାଇଁ।''

ଶିଲୁର ଗୋଡ଼ ଥରୁଚି, ଅଠା ଅଠା ତଣ୍ଟିରୁ କହୁଚି ସେ—'ମୁଁ ତାକୁ ଦେଖିଥିଲି। ବୁଲାକୁକୁରମାନେ ସେଇଠି ତାକୁ ... ।'

କଥା ପୂରା ନହେଉଣୁ ସମବେତ ଆଶ୍ଚର୍ଯ୍ୟ ସ୍ୱରମାନ ଶୁଭୁଚି।

—'କୋଉଠି ବ୍ରାଉନିକୁ ଦେଖିଲୁ ? କେତେବେଳେ ?'

—'ସେଇଠି, ଦାନ୍ତ ଘଷିଲାବେଳେ, କୁକୁରମାନେ ସେଇଠି ...'

—'ତୁ ଦେଖିଥିଲୁ ?' ମା' ଆଶ୍ଚର୍ଯ୍ୟରେ ଆଖି ଗୋଲ୍ କରି ଅନାଉଚନ୍ତି ତାକୁ ଅଚିହ୍ନା ଜନ୍ତୁଟିଏ ଦେଖିଲା ପରି—'ତୁ ଦେଖିଲୁ ତାକୁ କୁକୁରମାନେ ଭିଣି ପକାଉଥିଲେ ?' ଗୁରର ଫଟା କଂସା ସ୍ୱର ଚଢ଼ିଯାଉଚି—'ହେଇ ଦେଖିଲ ? ଟିକିଏ ଡାକିଦେଇ ପାରିଲନି କାହାକୁ ?'

'ହେଇଟି ଉଦିଆ ଦଉଡ଼ି ଯାଅ। ବୋଲି କହିଦେଇଥାନ୍ତ ହେଲେ—'ଉଦିଆ ଅଙ୍ଗଭଙ୍ଗୀ କରୁଚି।

ସମସ୍ତେ, ସମସ୍ତଙ୍କ କଥା ଘେରି ଯାଉଛନ୍ତି ଚାରିଆଡୁ। କିଛି କଥା ବୁଝି ହେଉନାହିଁ। ଘୋ ଘୋ ଘୋ। ମଝିରୁ ସରୁ କାନ୍ଦୁଣୁମାନ୍ଦୁଣୁ ସ୍ୱର ଶିଲୁର—'ମୁଁ ଜାଣିନି। ଜାଣିପାରିଲି ନାଇଁ। ମୁଁ ବ୍ରାଉନିକୁ ଦେଖିନାଇଁ।' ଘୋ ଘୋ ଘୋ ଘୋ।

ବାପା ଅଫିସ୍‌ରୁ ଫେରି ଥକା ହେଇ ସୋଫାରେ ବସିଚନ୍ତି । ଥମି ଯାଇଥିବା ଦୃଶ୍ୟ, କଥା ସବୁ ପୁଣି ପରସ୍ତେ ଅଭିନୀତ ହେଇଯାଇଚି । କେତେବେଳ ପରେ କାନ୍ଥ ପାଖରେ ଠିଆ ହେଇଥିବା ଶିଲୁକୁ ବାପା ଡାକିଲେ ।

—'ତୁ ଦେଖିଥିଲୁ ?''

ମୁଣ୍ଡ ଟୁଙ୍ଗାରି ଛେପ ଢୋକି ଶିଲୁ ପ୍ରାଣପଣେ ବୁଝାଇବାକୁ ଚେଷ୍ଟାକଲା—'ମୁଁ ଦାନ୍ତ ଘଷୁଥିଲି ।'

—'ହେଲା ଦାନ୍ତ ଘଷୁଥିଲୁ ଯେ, ସେଇଠୁ ଦେଖିଲୁ ଆଉ ଚୁପ୍ ରହିଲୁ ?'

—'ଆମ ବ୍ରାଉନି ବୋଲି ଜାଣିପାରିଲିନି । ଭାବିଲି ବୁଲାକୁକୁର ଛୁଆ ।'

—'ଯେଉଁ କୁକୁର ଛୁଆ ହେଉ, ତୁ ଦେଖିଲୁ ଛୁଆଟିକୁ ବଡ଼ କୁକୁର ଗୁଡ଼ାଏ ଘେରି ଯାଇଥିଲେ, କାମୁଡ଼ି ମାରିପକାଉଥିଲେ । ତୁ ତୁନି ହୋଇ ଠିଆହେଇ ରହିଲୁ ?'

ଶିଲୁ ବାଁହାତ ଆଙ୍ଗୁଠିରେ ବେକ ପଛରୁ ମଳି ଘଷିଲା । ଛାତକୁ, ପଙ୍ଖାକୁ ଲାଇଟ୍‌କୁ ଅନେଇଲା କେଉଁଠୁ ଅଭୟ ହସ୍ତଟିଏ ଆସିବ କି ବୋଲି । ଗୁଳା ବାନ୍ଧି ଯାଇଥିବା ତଣ୍ଟିରୁ ସ୍ୱର ଫୁଟେଇଲା—'ଦାନ୍ତ ଘଷୁଥିଲି ।'

ହସ୍ତାକ୍ଷର, ଗଣିତ । ଟ୍ୟୁସନ ମାଷ୍ଟର । ଗାଧୁଆ, ଭାତଖିଆ ଦିପହର । ପୂରା ଘରଟା ନିସ୍ତବ୍ଧ । କଣ ଖଡ଼୍‌ଖାଡ଼୍ ଶୁଭୁଚି ସେ ଘରୁ, ବ୍ରାଉନି ପୁଣି କାହା ଜୋତା ର୍ୟାକ୍ ତଳୁ ଘୋଷାରି ନେଲାଣି କି, ଆଗ ଦୁଇଗୋଡ଼ରେ ଜାକି ମୋଟା ଥାକୁଳ ଥୁକୁଳ ଦେହଟାରେ ପେଟେଇ ପଡ଼ି କୁଟୁରୁ କୁଟୁରୁ ଛିଡ଼େଇ ଦେବ । ନାହିଁ ବ୍ରାଉନି ।

ନାନୀ ସୁଏଟର ବୁଣୁଚନ୍ତି ବାହାର ବେତ ଚଉକୀରେ । ଗୋଟିଏ ଗୋଟିଏ ଯାଇ ପାଖରେ ଆଉଜି ଠିଆ ହେଲା ଶିଲୁ । ହାତ ଚାଲୁଚାଲୁ ନାନୀ ତା ଆଡ଼େ ଅନେଇଲେ । ଶିଲୁ ସେହିକ୍ଷଣି ବଗିଚାଆଡ଼େ ଅନେଇଲା ତାଙ୍କ ଆଖିକୁ ସାମ୍ନା ନକରିବ ବୋଲି । 'କୁକୁଡ଼ାଟାଏ ଚାଲିଆସିଲାଣି ଇଆଡ଼େ' କହି ଆଦୌ ନଥିବା କୁକୁଡ଼ାକୁ ଘଉଡ଼ିବାକୁ ଦଉଡ଼ିଗଲା ସେ । ସବୁ ଶବ୍ଦ କୋଷ, ସବୁ କଥାର ସ୍ରୋତ ତା'ର ଶୁଖିଯାଇଚି । ସବୁ ମଣିଷମାନେ ଦୂରେଇ ଯାଇଚନ୍ତି । ବ୍ରାଉନି ଥିଲେ ତାକୁ ଗେଲ କରନ୍ତା ସିଏ ଏମିତି ବେଳରେ । ଛାତିରେ ଜାକିଧରି ଚୁମା ଦିଅନ୍ତା ।

ରାତିରେ ଶୋଇ ଶୋଇ ଶିଲୁର ନିଦ ଭାଙ୍ଗିଯାଏ । ଆଖି ବୁଜିଲେ ସାରାଦିନର କଥାସବୁ କ୍ରମେ ଅନ୍ଧାରରେ ଗୋଳିଆ ପୋଳିଆ ହୋଇଯାଏ । ସେ ଦାନ୍ତ ଘଷୁଥାଏ ବେସିନ୍ ପାଖେ, କୁକୁରଙ୍କୁ ଦେଖି ଫେଣ ମୁହଁରେ ପାଟିକରେ—ଉଦିଆ ଧାଇଁଯାଆ । ବ୍ରାଉନିକୁ ମାରିପକେଇଲେ । ଆଖି ଖୋଲିଯାଏ । ଦିନସାରା କଟି ସାରିଥାଏ ଯେମିତି

ଥରେ କଟିଥିଲା । ଆଖି ବୁଜିଲେ କେତେ ପୁରୁଣା କଥା ଆଖିକୁ ଚାଲିଆସେ, ମାମୁଘରୁ ଦଳ ହୋଇ ସର୍କସ ଯାଇଥିବା କଥା, ସାନ ମାଉସୀଙ୍କ ବାହାଘର ବେଳ କଥା । ବ୍ରାଉନି ଆସିବା ଦିନ କଥା । 'ସବୁବେଳେ ତାକୁ ଏମିତି ଚାକି ଧରନା ଶିଲୁ, ଖେଳି ବୁଲୁ ସିଏ ।' ବାହାରେ କୁକୁରଙ୍କ ଗୋଳ ଶଭୁଚି । ଉଦିଆ ଦାନ୍ତ ଦେଖେଇ ହସି କହୁଚି—କୋଉଠି ଆମ କୁକୁରକୁ କାମୁଡ଼ି ପକାଇଲା ମ କିଏ । ହେଇଟି ପରା ସିଏ ଶୋଇଚି ଢାବଲ ଭିତରେ ତା ବିଛଣାରେ, ତମେ ଯାଉନା ପଢ଼ିବ । ଗୁର କହୁଚି—କେଡ଼େ ପାଟିଟାଏ କରୁଚ ମିଛଟାରେ, ଯେତେକ ଫନ୍ଦି, ମା'ଙ୍କୁ ଡାକୁଚି ରହ । ବାଡ଼ ସେପାଖରୁ ଶୁଭୁଚି ସରୁ ଆର୍ତ୍ତ ଗୋଟିଏ କ୍ୟାଉଁ କ୍ୟାଉଁ । ହାତରେ ବାଡ଼ି ଧରି ମୁଁ ଧାଇଁଯାଉଚି ଏକୁଟିଆ, ଚମକି ରହିଯାଉଚନ୍ତି କୁକୁରମାନେ, ମୁଁ ପଥର ମାରି ଘଉଡ଼ି ଦେଉଚି କୁକୁରଙ୍କୁ । ବ୍ରାଉନି ନୁହେଁ, ଟିକି ପତଳା ବୁଲାକୁକୁରଟିଏ, ସେଇ ପୋଲ ତଳର ହେବ, ଆଶ୍ୱାସରେ ଧାଇଁ ଆସୁଚି ମୋ ଗୋଡ଼ ପାଖକୁ । ମା'ଙ୍କ ପାଟି ଶୁଭୁଚି—ଛି ଛି, ଫୋପାଡ଼ ତାକୁ, ଅସନା । ବାପା ବିରକ୍ତ ହେଇ କହୁଚନ୍ତି—କିଏ କହିଲା ତତେ ବାହାରକୁ ଧାଇଁଯିବାକୁ କୁକୁରଙ୍କ ମେଳକୁ ? କାମୁଡ଼ି ଦେଇଥିଲେ କ'ଣ ହୋଇଥାନ୍ତା ? ଦୁର୍ବଳିଆ କୁକୁରଛୁଆଟିଏ ମୋ ପାଦ ପାଖରେ ଲାଞ୍ଜ ହଲାଉଚି, ମୋ ମୁହଁକୁ ଅନେଇଚି କୃତକୃତ୍ୟରେ ।

ଚାଉଁକିନି ଆଖି ପୁଣି ଖୋଲିଯାଉଚି । ଅଳ୍ପ ଦୂରରେ ଖଟରେ ନିଶ୍ଚିନ୍ତ ଶୋଇଯାଇଚନ୍ତି ନାନୀ । ଗୁର ତଳେ ତା କନ୍ଥା ପାରି ଶୋଇଚି, ପୁରୁଣା ଶାଢ଼ିରେ ନିଜେ ସିଇଁଚି ବସି ଦିପହରରେ । ଦିପହରରେ ସେ ଜମା ଶୁଏନି । ପଛରୁ ଚମକେଇ ଦେଇ ପାଟିକରେ—'ହେଇଟି କିଏ କହିଲା ତମକୁ କୁକୁର ଛୁଆକୁ ରୋଷଘରକୁ ଆଣିବାକୁ ? ଖାଇଲା ଥାଳିଆରେ ଦୁଧ ଦେଲଣି ତାକୁ । ଛି ଛି ।' ଚାକୁଚାକୁ କରି ପ୍ଲେଟ୍‌ରୁ ଦୁଧ ପିଏ ବ୍ରାଉନି । ପିଉପିଉ ଆଉ ଦୁଇ ଗୋଡ଼ରେ ପ୍ଲେଟ ଉପରକୁ ଚଢ଼ିଯାଏ ଯେ ପ୍ଲେଟ ଓଲଟି ଦୁଧଯାକ ଲଦ଼ିଯାଏ ତା ଗୋଡ଼ ସାରା, ମୁହଁର ରୁମଯାକ ଦୁଧରେ ଧଳା ପାଚିଲା ଦାଢ଼ି ଭଳି ଦେଖାଯାଏ । ହସି ହସି ଶିଲୁ ନୟାନ୍ତ ହୋଇଯାଏ ।

ଶିଲୁ ଦେଖିଲା ସେ ନିଜେ କାନ୍ଦୁଚି । ଏତେ ଜୋର୍‌ରେ କାନ୍ଦୁଚି ଯେ ତକିଆରେ ମୁହଁ ମାଡ଼ିଲେ ବି ହିକ୍କା ଉଠୁଚି, କାଳେ ସମସ୍ତେ ଉଠିପଡ଼ିବେ ବୋଲି ଡରଲାଗୁଚି । ତଥାପି ସେ କାନ୍ଦିଲାଗିଚି ଆଉ କହୁଚି—ମୁଁ ଗେଲ କରିବି ବ୍ରାଉନିକି, ଏବେ, ଏଇକ୍ଷଣି । ଛାତିରେ ଚାକିଧରି ଚୁମା ଦେବି ତା ରୁମୁରୁମିଆ ମୁହଁରେ । କାଇଁକି ଗୁର ଏକୁଟିଆ ତାକୁ ଦୁଧ ପିଇବାକୁ ଦେବ ? ଉଦିଆ ହିଁ ତାକୁ ବୁଲେଇ ନବ ? ଯା ଶିଲୁ, ପଢ଼ିବସ୍ ଯା । ଗାଧେଇବୁ ଯା । ଏଇଆ କର୍, ସେଇଆ କର୍ । ବ୍ରାଉନିକୁ ଧରିବୁ

ପରେ, ଏବେ ନୁହେଁ । ସିଏ ତ ଘରେ ଅଛି, କଣ କୁଆଡ଼େ ପଳେଇ ଯାଉଚି । ଏବେ ପୁଣି କୁଆଡ଼େ ଗଲା ବ୍ରାଉନି ?

—''ଶିଲୁ ଶୋଇନା କି ?''

ଶିଲୁ ଏକଦମ୍ ଚୁପ୍ ହୋଇଗଲା । ଗୁର ଅନ୍ଧାରରେ ଉଠିଆସି ତା ଖଟ ପାଖେ ଠିଆ ହେଇଚି, ଦେହରେ ହାତ ମାରି ପଚାରୁଚି—'କଣ ହେଲା ? କାନ୍ଦୁଚ କି ଶିଲୁ ?'

ଶିଲୁ ଉତ୍ତର ଦେଉନି । ଚୁପ୍ ହେଇ ଶୋଇଚି ମିଛରେ । ଗୁର ଆଉଁସି ଦେଇ ପଚାରୁଚି—'କୁକୁରମାନେ ତ ମାରିପକେଇଲେ ତାକୁ । କିଏ କ'ଣ କରିଥାନ୍ତା ?'

ଶିଲୁ ଚୁପ୍ ରହିଲା ଦାନ୍ତଚାପି ।

—'ଶୁଣ, ସେ ସବୁ କୁକୁରଙ୍କୁ ମୁଁ ଚିହ୍ନି ରଖିଚି ଯେ, କାଲି ସେ ମୁନ୍‌ସିପାଲ୍‌ଟିବାଲାଙ୍କୁ ଖବର ଦେବା ଯେ ସବୁଗୁଡ଼ାଙ୍କୁ ଧରିନେବ ଆଉ ମାରିଦେବ । ହେଲା ? ହେଇଟି, ଉଦିଆ ଗୋଟି ଗୋଟିକୁ ଧରିଆଣି ଠେଙ୍ଗାରେ ବାଡ଼େଇବ କାଲି, ହେଲା ? ଏଥର ଶୋଇପଡ଼ ।'

ଗୁର ତା ବିଛଣାକୁ ଫେରିଗଲା ବେଳେ ଶିଲୁ ଉଠିପଡ଼ି ବସିଲା, ଆସ୍ତେ ଡାକିଲା 'ଗୁର, ମୁଁ ତୋ ପାଖେ ଶୋଇବି ।'

ତା ଶୋଇଲା କନ୍ଥାଟିକି ସିଧା କରି ପାରିଦେଇ ଗୁର ଡ଼ାକିଲା—'ହଉ, ଆସ ।'

ଗୁର ଦେହକୁ ଲାଗି ଶୋଇଲାବେଳେ ଶିଲୁ ଜାଣିଲା, ଏଣିକି ତା ଶୋଇବା ଗୁରର ଦାୟିତ୍ୱ, ଯେମିତି ସେ ସକାଳୁ ନିଜ ବିଛଣାରେ ଥିବା ଦାୟିତ୍ୱ ବି ଗୁରର । ଏତିକିବେଳେ ତାର ସକାଳର ଫଟା ଙ୍କସାସ୍ୱର ଆଉ ନଥାଏ । ଫସ୍‌ଫସିଆ ଆଉଁସା ଗଳାରେ ସେ ତାକୁ ନିଜ ଗାଁ କଥା କହେ, ତା ପିଲାଦିନ କଥା ଗପେ ।

ଶିଲୁ ପଚାରିଲା—'ତୋ ପିଲାଦିନେ କୁକୁରଥିଲା ତମଘରେ ?'

—'ନାଇଁ ତ । ଆମ ଗାଁରେ ଖାଲି ବାଙ୍ଗେ କୁକୁର ଥା'ନ୍ତି, ସୁନ୍ଦର କୁକୁର କୋଉଠି ଥା'ନ୍ତି ଯେ ପାଳିବ ? ମୋ ବାପା ଥରେ ବଣରୁ ନେଉଳ ଛୁଆଟାଏ ଆଣିଥିଲା । ହେଲେ ସେଇଟା ପୁଣି ପଳେଇଲା କୁଆଡ଼େ ।'

ଗୁର ତା ବାପାକୁ ତୁ ତା କରି କହେ । ଶିଲୁ ପଚାରିଲା

—'କୁଆଡ଼େ ପଳେଇଲା ? ଏକୁଟିଆ ଗଲା ?'

—'ରାତିରେ ପଳେଇଲା ତା ବାପମା ପାଖକୁ । ମୋ ବାପ ନିଜେ ତ ଘରୁ ପଳେଇଲା ଯେ ଆଉ ଫେରିଲାନି ।'

କେତେଥର ଗୁର ମୁହଁରୁ ତା ବାପ ମରିଥିବା କଥା ଶୁଣି ବି ପୁଣିଥରେ ଶିଲୁ ପଚାରିଲା—'କୁଆଡ଼େ ଗଲା ତୋ ବାପା ?'

—'କୁଆଡ଼େ ଗଲା ଯେ ବଣ ଭିତରୁ ଆଉ କ'ଣ ଫେରିଲା ? ବାଘ ଖାଇଥିବ କି ତୁମା ବେଟି ନେଇଥିବ । କେତେ ଲୋକ କେତେ କଥା କହିଲେ । ପାହାଡ଼ ଆର ପାରିରେ ତା ଖଣ୍ଡିଆ ଦେହ ଧୋତି ପଡ଼ିଥିଲା ବୋଲି ବି କହିଲେ ।'

—'ଖୋଜିବାକୁ ଗଲନି ?'

—'କିଏ ଯାଇଥାନ୍ତା ?'

ଗୁରଠୁ ସେ ଆଗରୁ ଶୁଣିଚି । ଆଜି ବି ଶୁଣିଲା ପୁଣିଥରେ ।

—'ତୁମା ଦେବ୍‌ତା କେତେ ରୂପରେ ବେଟି ନିଏ ଯାହାକୁ ଇଚ୍ଛା ତାକୁ । ବାଘ ରୂପରେ, ଜର୍ ରୋଗ ରୂପରେ । ଯେଉଁ ଜୀବକୁ ତା ଯୋଗ୍ୟ ରୂପରେ ।'

—'ତୁମା କୋଉଠି ଥାଏ ଗୁର ?'

—'ସେ ଅଛି ଗୋଟାଏ । ମାରି ପକାଏ ଲୋକଙ୍କୁ । ଜୀବଜନ୍ତୁଙ୍କୁ ।'

—'କାହିଁକି ମାରେ ?'

—'ତା ମନ, ମାରିଦିଏ । ତାକୁ ଖୁସିଲାଗେ ମାରିଲେ । ତମେ ମାରିପକାଅ କି ନାଇଁ ଭାଲୁପୋକକୁ, କାଠିରେ କେଞ୍ଚୁ ପୋତିଦିଅ କାଦୁଅରେ ?'

ଶିଲୁର ବୁଜି ହେଇ ଆସୁଥିବା ଆଖି ତଳେ ପୁଣି ଥରେ ଗୋଳିଆ ପୋଳିଆ ହୋଇଯାଉଥିଲା ପଛକଥା, ଆଗକଥା, ଘଟିଥିବା ନଘଟିଥିବା କଥା । ଗୁରର ଅଧା ଶୁଭିଲା କଥା ସବୁ ବି ପଶିଯାଉଥାଏ ସେ ଚିତ୍ର ଭିତରକୁ—'ଗଲା କଥା ସବୁକୁ ବି ତୁମା ନେଇଯାଏ । ଗଲା କଥା ଯାହା, ସପନ ତାହା ।'

❑❑❑

# ଛୁଟିଦିନ

ଶୁକ୍ରବାର ସାରା ଗୋଟିଏ ଘଟଣା ଆଶାରେ କଟେ, ରାତି ଆଠଟା ବସ୍‌ରେ ଭବେଶ ଆସିବେ । ସାନ ଅଗଣାରେ ବେତ ଚଉକିଟିଏ ପକେଇ ଜୟନ୍ତୀ ଚାକରାଣୀ ବୁଢ଼ୀ ସାଙ୍ଗରେ ଗପୁଥାଏ । ରିନୁ, ଝିନୁ ଆଜି ତାଙ୍କର ଅଳିଆ ମଳିଆ ହାଣ୍ଡି କୁଣ୍ଡେଇ ଖେଳନା ଯେତକ ଗୋଟେଇ ପୁରୁଣା ଭଙ୍ଗା ସୁଟ୍‌କେଶ୍‌ଟିରେ ପୂରେଇଦେଉଛନ୍ତି; ନ ହେଲେ ବାପା ଚକ୍‌ଲେଟ୍ ଦେବେ ନାହିଁ ।

ଶନିବାର ରବିବାର ଛୁଟି ମିଶେଇ ଭବେଶ ପ୍ରାୟ ଶୁକ୍ରବାର ଦିନ ଆସନ୍ତି, ଗୋଟିଏ ଲେଖାଁ ପାଳି ଛାଡ଼ି । ଚାରି ଘଣ୍ଟାର ବାଟ ବସ୍‌ରେ, ସଞ୍ଜରେ ପହଞ୍ଚି ଯାଆନ୍ତି । ରବିବାର ଉପରଓଳି ନ ହେଲେ ସୋମବାର ଭୋର୍ ବସ୍‌ରେ ଫେରିଯିବାକୁ ହୁଏ, ସୋମବାର ଦଶଟାରେ କ୍ଲାସ ଥାଏ ।

ଚାକରାଣୀ ଗଉରୀ ଗପୁଚି, ତା' ପୁଅ ରିକ୍‌ସା ଚଲଉଚି, ବୋହୂ ତାକୁ ରହିବାକୁ ଦେଉନାହିଁ ବୋଲି ସେ ତାର ନିଜର ଝୁପୁଡ଼ି ଖଣ୍ଡିଏ ତିଆରି କରୁଚି । ପୁଅ ତାକୁ ସାହାଯ୍ୟ କରୁଚି ତିଆରିରେ । ଜୟନ୍ତୀ ଅଧା ମନଥାଇ ତା' କଥା ଶୁଣୁଚି, ପୁଣି ମନଟା ଚାଲିଯାଉଚି କେତେ ଆଡ଼କୁ । ବାରିପାଖରୁ ପଡ଼ିଶାଘର ଗୁହାଳ ଗନ୍ଧ ସାଙ୍ଗେ ମିଶାମିଶି ହାଲୁକା ଫୁଲ ବାସ୍ନାଟିଏ ବହିଆସୁଛି । ସାନ ସହରଟିର ଦରିଦ୍ରା ଭାବ ସଞ୍ଜବେଳେ ବେଶି ବାରି ହେଇପଡ଼େ । ତଥାପି ଦିନ ଯାଉଯାଉ ନୂଆ କଥା ସବୁ ଆପଣାର ଲାଗିଆସେ । ଏଠି କି ଗୋଟାଏ ଫୁଲ ଫୁଟେ ଠିକ୍ ଶୀତ ସରିଆସିଲା ବେଳକୁ । ଝଙ୍କା ଗହଳିଆ ବୁଦାମାନଙ୍କରେ ଗୋଛା ଗୋଛା ଫିକା ଗୋଲାପୀ ରଙ୍ଗର ଫୁଲ ଲଦି ହେଇଯାଏ । ଘରପାଖ ଆମ୍ବଗଛ, ଓସ୍ତଗଛ ତଳେ, କଲେଜ ଯିବା ରାସ୍ତାରେ ଜେଲଖାନାର ପୁରୁଣା ପାଚେରି କଡ଼େ କଡ଼େ, ସନ୍ତସନ୍ତିଆ ପୋଖରୀ ନାଳ କଡ଼ରେ ମେଳା ବାନ୍ଧିଥାନ୍ତି ଏ ଫୁଲ ବୁଦା, ଆଖପାଖ ଚହଟୁଥାଏ ଫିକା ବାସ୍ନା । ବଣମଲ୍ଲୀର ହିଁ ଗୋଟାଏ ପ୍ରକାର ହେବ କି କଣ ।

ଗଉରୀ ଉଠିଗଲାଣି ଭିତରକୁ ପିଲାଙ୍କ ପଛରେ । ଅନ୍ୟ ଦିନ ସେ ଏତେବେଳକୁ ଯାଇସାରିଥାଏ । ତାକୁ ଚୁପ୍‌ଚାପ୍ ବେଶୀ ବେଳ ବସିବାକୁ ଭଲଲାଗେ ନାହିଁ । କିଛି

ଗୋଟାଏ ଆଳରେ ଡକାହକା, ପିଲାଙ୍କ ପଛରେ ପାଟିତୁଣ୍ଡ କରିବାକୁ ତାକୁ ଭଲ ଲାଗେ । କିଛି ନ ଦେଲେ ବାଲ୍‌ଟି, ଡେକ୍‌ଚି ଧଡ଼୍‌ଧାଡ଼୍ କରି ଖାଁ ଖାଁ ପଣକୁ ବାଟ ଆଗୁଳି ଦେବା ତା' ଉଦ୍ଦେଶ୍ୟ ।

ଜୟନ୍ତୀର ଏଠିକା କଲେଜରେ ଚାକିରି ପାଇ ଆସିବା ତିନିବର୍ଷ ହେଇଗଲାଣି । ଏଠି ଆସି ରହିବାଯାଏ ତାର ବିଶ୍ୱାସ ହେଉ ନଥିଲା, ସାହସ କୁଳାଉ ନଥିଲା, ଦିଇଟି ଟିକି ପିଲାଙ୍କୁ ନେଇ ଏ ଅଚିହ୍ନା ସହରରେ ରହିପାରିବ ବୋଲି । ଭବେଶ ଆସି ବେଶିଦିନ ରହୁଥିଲେ ସେତେବେଳେ, ସବୁ ବନ୍ଦୋବସ୍ତ କରି ଦେଇଥିଲେ । ସେ ଦିନମାନଙ୍କରେ ଭବେଶ ଚାଲିଗଲାକ୍ଷଣି ଲାଗେ, କେମିତି ଚଳିବ ସେ ଏଠି । ସତେକି ମୁଦା ଦୁଆର ଘରଟିଏ ସାମ୍ନାରେ ଠିଆ ହେଇଚି ସେ କାତର ହେଇ, ବସିପଡୁଚି ଥକାହେଇ ପିଣ୍ଡାରେ କିନ୍ତୁ ଭିତରକୁ ଯିବା ଲାଗି ବାଟ ନାଇଁ । ସେମିତି ଭାବ ନାହିଁ ଏବେ ଆଉ । ଏଇ ଏବେ ବସିଚି ସେ ଏକରକମ ନିଶ୍ଚିନ୍ତରେ ନିଜ ଘର ଅଗଣାରେ, ବାରିପାଖ କବାଟ କଡ଼ର ଟିକିଏ ଖୋଲା ମାଟିରେ କଦଳୀ ଗଛରେ କାନ୍ଦି ପଡ଼ିଚି, ମଲ୍ଲୀଗଛ କେଇବୁଦାରେ କଢ଼ ଧରିଚି ଭର୍ତ୍ତି ହେଇ ।

ତଥାପି ନିଶୂନ ଭାବଟିଏ ଛାଇଥାଏ ସବୁବେଳେ । ସାରା ସପ୍ତାହ ଅନେଇ ବସିଥାଏ ଗୋଟିଏ ପାଳିଛାଡ଼ି ଶୁକ୍ରବାରକୁ । ଭବେଶ ସାଙ୍ଗରେ ଅଲଗା ରହିବା ବି ତିନିବର୍ଷ ହୋଇଗଲା । ପ୍ରଥମେ ଚାକିରିରେ ଜଏନ୍ କରି ଆସିବାପରେ ଜୟନ୍ତୀ କହିଥିଲା—ମୁଁ ଜମା କରି ପାରିବି ନାଇଁ ଏ ଚାକିରି, ଥାଉ ନ ହେଲା ନାହିଁ । ଖବରକାଗଜରେ ବିଜ୍ଞାପନ ଦେଖି ଏପ୍ଲିକେଶନଟାଏ ପକେଇଦେଲାବେଳେ ଜୟନ୍ତୀ କ'ଣ ବା ଭାବିଥିଲା ତା'ପରେ କାଟିବାକୁ ଯାଉଥିବା ଜୀବନ କଥା ? ଭବେଶର ପିଇସା ଓକିଲାତି କରନ୍ତି ଏ ସହରରେ, ଭବେଶ ଲାଗି ନିତାନ୍ତ ଅପରିଚିତ ନୁହଁ ଜାଗାଟା । ଦିହେଁ ଯେତେବେଳେ ଆସିଲେ ଜୟନ୍ତୀର ଇଣ୍ଟରଭିଉ ଲାଗି, ପିଇସା କହିଲେ—'ଚାକିରିଟା ଜମା ହାତଛଡ଼ା କରନା ଝିଅ, କଲେଜଟା ସରକାରଙ୍କ ହାତକୁ ଚାଲିଯିବାର ଅଛି, ତେଣିକି ତୋ ଚାକିରି ସରକାରୀ ହେଇଯିବ ।' ଭବେଶ କହିଲେ—'ତାପରେ ବଦଳି କରାଇଦେବାଟା ସେତେବଡ଼ କଥା ହେବନି; ନ ହେଲେ ସୋସିଓଲୋଜିରେ ତମକୁ ସରକାରୀ କଲେଜରେ ଚାକିରି ମିଳିବା କଥା ମିଛ ।' କଲେଜରେନୂଆ ଚିହ୍ନା ଲେକ୍‌ଚରରମାନେ ଭରସା ଦେଇଥିଲେ—'ଅତି ହେଲେ ବର୍ଷେ ଛ'ମାସର କଥା ।' ଆଉରି ତିନି ଜଣ ଝିଅ ପାଖରେ ଘରଭଡ଼ା ନେଇ ଏକାଠି ରହୁଚନ୍ତି । ତିନିଟି ପିଲା ନେଇ ଏକୁଟିଆ ରହୁଚି ହିଷ୍ଟ୍ରିର ଲେକ୍‌ଚରର୍ । ଶାନ୍ତଶିଷ୍ଟ ପୁରୁଣାକାଳିଆ ସହର । ଛାନିଆଁ ହେବାର କିଛି ନାଇଁ ।

ରିନୁ, ଝିନୁ ସେତେବେଳେ ବି' ତିନି ବର୍ଷର। ପୁଣିଥରେ ଦିନାକେତେ ତାକୁ ରାତିରେ ନିଦ ହେଲା ନାହିଁ, ବିଛଣାକୁ ଗଲାକ୍ଷଣି ମୁଣ୍ଡ ଉପର ବୋଝ ମାଡ଼ିପଡ଼ିଲା। ହସ କଥାଟାଏ ପଢ଼ିଲେ ବି ମୁହଁକୁ ହସ ଆଣିବା ପରିଶ୍ରମପରି ଲାଗିଲା। ଯେମିତି ଲାଗିଥିଲା ବାହାଘର ପରେ ପରେ, ବାପମା'ଙ୍କ ଅମତରେ ଭବେଶର ହାତଧରି ଘରୁ ଚାଲିଆସିବା କେତେ ବୁଦ୍ଧିମତ୍ତାର କାମ ହେଇଚି ଯେତେବେଳେ ଜୟନ୍ତୀ ସ୍ଥିର କରି ପାରୁନଥିଲା।

ଭବେଶର ପରିବାର ତିନିପୁରୁଷ ହେଲା ଓଡ଼ିଶା ଛାଡ଼ି ରାୟପୁର ପାଖ ଗୋଟିଏ ଗାଁରେ ଜମିଜମା ନେଇ ରହିଯାଇଥିଲେ। ଭବେଶ କଲେଜ ପାଠ ପଢ଼ିଲା ଓଡ଼ିଶାରେ, ବଡ଼ଭାଇ ପାଖରେ ରହି। ଶାଶୁଘରକୁ ଆସି ପ୍ରଥମେ ଜୟନ୍ତୀ ଆବାକାବା ହେଇଗଲା ତା' ଅନୁଭବରେ, କେତେ ଶହ ମାଇଲ ଦୂରକୁ ଆସିଯିବା ଏମିତି ବିଦେଶପରି ଲାଗିବ ବୋଲି ସେ ଭାବିପାରି ନଥିଲା କେବେ ଆଗରୁ।

ତା'ପରେ ଏମିତି ଥରକୁ ଥର ଏଇ ଭାବ ତାକୁ ଆବୋରିଛି କେତେଥର। ଅନିଶ୍ଚିତତା ଓ ଏକପ୍ରକାର ନିଛାଟିଆ ଭାବ କଳା କମ୍ବଳଟିଏ ଭଳି ମୁଣ୍ଡ ଉପରୁ ଆବୋରି ଧରେ, ମନେହୁଏ ନିଜ ଲୋକସବୁ ଛାଡ଼ିଗଲେଣି କାହିଁ କେଉଁଠି କିଏ ନାହାନ୍ତି ପରି। ଅତି ପାଖରେ ସେଠି ଭବେଶ ବହିଟିଏ ଧରି ପଢୁଥାଆନ୍ତି। କାହିଁକି କେଜାଣି ତାକୁ ସେମିତି ଲାଗେ। ଏଥ ସହରକୁ ଆସିଲାପରେ ବି ସେମିତି, ଠିକ୍‌ଠାକ୍ ଗଡ଼ି ଚାଲିଥାଏ ଦିନ। ପାଖ ଖଟରେ ନିଶ୍ଚିନ୍ତ ନିଦରେ ଶୋଇଥାନ୍ତି ପିଲା ଦିହେଁ। ସେଇଦିନ ସକାଳୁ ଯାଇଥାନ୍ତି ଭବେଶ, ତଥାପି ଲାଗେ ମୋ ନିଜ ଲୋକଙ୍କୁ ମୁଁ ଛାଡ଼ିଆସିଲି କାହିଁ କେତେ ଦୂରରେ। କାଲି କଣ ହେବ କିଛି ଠିକଣା ନାହିଁ।

ଏବେ ପୁଣି ଆଉ କେତେ ଭାବ ବି ଆସି କେତେବେଳେ ଅନାୟାସ ଟେକି ନେଇଯାଏ ସେ କଳା କମ୍ବଳକୁ। ରିନୁ, ଝିନୁଙ୍କର ପାଠପଢ଼ା, ନାଚରେ ପ୍ରାଇଜ୍। କଲେଜରେ ପିଲାଙ୍କ ପରୀକ୍ଷା ଖାତା, ସାଙ୍ଗ ଲେକ୍‌ଚରର୍ କାବେରୀ ବସୁର ପ୍ରେମ ଉପାଖ୍ୟାନ, ବୁଧବାରକୁ ବୁଧବାର ମହିଳା ମଣ୍ଡଳ, କ୍ୱାଟର୍ସ ଆଗର ସାନ ଫୁଲ କିଆରୀ କେତୋଟି।

ଘଡ଼ିରେ ଆଠଟା ବାଜିବ। ଗଉରୀ ପଚାରିଲା—''ମା, ଝିନୁ ଶୋଇବାକୁ ବସିଲାଣି, ଖାଇବାକୁ ଦେଇଦିଏଁ ?''

ଭବେଶ ପିଲାଙ୍କ ସାଙ୍ଗେ ଏକାଠି ଖାଇବାକୁ ଭଲପାନ୍ତି। ଆଠଟା ବସ୍‌ରେ ବୋଧେ ଆସିଲେନି, ନ'ଟାବେଳେ ଆଉ ଗୋଟିଏ ବସ୍। 'ଦେଇ ଦେ' ଗଉରୀ, ଖାଇବାକୁ ଦେଇଦେ ପିଲାଙ୍କୁ। ମୁଁ ଦେଖେଁ ନଅଟା ବେଳ ବସ୍‌କୁ।' ଆଜି ଗଉରୀ

ରହିବ ବିନା ଓଜର ଆପତ୍ତିରେ ଯେତେ ରାତିଯାଏଁ କହିଲେ ବି, ଭବେଶ ଆଣିଥିବା ଚୁଡ଼ା, ମୁଢ଼ି, ବାରିର ପରିବାରୁ ତା' ଭାଗ ଟିକକ ନେଇଯିବ ।

ରିନୁ ଝିନୁଙ୍କୁ ସେ ଆଜି ସଞ୍ଜବେଳେ ପଢ଼େଇ ନାହିଁ । ବି.ଏ. ପାସ୍‌କରା ଖଣ୍ଡିଆ ଇଂରେଜୀ କହୁଥିବା କନ୍‌ଭେଣ୍ଟ ସ୍କୁଲ ମାଷ୍ଟ୍ରାଣୀ ଦଶଟି କିଟିମିଟିଆ ଶବ୍ଦ ଦେଇଥିବ ବନାନ୍ ମୁଖସ୍ଥ କରିବାକୁ । କାଲି ଛୁଟି । କଲେଜ ଝିଅମାନେ ଡ୍ରାମା ରିହର୍ସାଲରେ ଏମିତି ମାତିଛନ୍ତି ଯେ ଲାଗିଥିଲେ ଶନିବାର ରବିବାର ତା' ଘରକୁ ଆସିବେ, ରିହର୍ସାଲ୍ କରିବାକୁ । ସେମାନଙ୍କୁ ମନା କରିଦେଇଛି, ଅନ୍ୟ କାହା ଘରକୁ ଯାଆନ୍ତୁ; ତଥାପି ବ୍ୟସ୍ତ ଲାଗୁଛି କାଳେ ନ କରିବେ, ଆର ଶୁକ୍ରବାରକୁ ଏନୁଆଲ୍ ଫଙ୍କସନ୍ । ଭବେଶ ଆସିବେ, ତାକୁ ନିଜ ଲାଗି ଖାଲି ରଖିବାକୁ ପଡ଼ିବ ଦୁଇଟି ଦିନ ।

ଛୁଆ ଦୁହେଁ କଳି ଲଗେଇଲେଣି ବାରଣ୍ଡା ବେସିନ୍ ପାଖରେ କିଏ ଆଗ ହାତ ଧୋଇବ । ଯିଏ ଧୋଇବ ସିଏ ଆଗ ଖାଇସାରିଚି ବୋଲି ପ୍ରମାଣିତ ହେବ । ଜୟନ୍ତୀ ପାଟିଗଲା—''ଶୋଇବ ଯାଅ, ବହୁତ ହେଲା; ନ ହେଲେ ମୁଁ ବାପାଙ୍କୁ କହିଦେବି କେହି ଫାଷ୍ଟ ହେଇନା । ଦିହିଙ୍କ ଥାଳିରେ ତରକାରି ଛାଡ଼ିଚ, ହେଇଟି ଗଉରୀ ନେଇକି ଗଲା ମୁଁ ଦେଖିଚି ।''

ଦିହିଙ୍କ ଦମ୍ଭ ଟିକିଏ ଝାଉଁଳିଗଲା, କିଚିରିମିଚିରି ହେଇ ଦିହେଁ ପାଦ ପବରେ ଠିଆହେଇ ହାତ ଧୋଉଚନ୍ତି । ଝିନୁର କପାଳ ଯାଏଁ ବେସିନ୍, ଟିପରେ ଠିଆହେଲେ ବି ଧୋଉ ଧୋଉ ଫ୍ରକ୍ ଓଦା କରିଦେବ । ଜୟନ୍ତୀ ଉଠି ତା' ପାଖକୁ ଗଲା । ମୁହଁ ଧୋଇସାରିଲା ବେଳକୁ ଜିଦି କଲେଣି ଦିହେଁ—'ଚାଲ୍ ମା, ଗପ କହିବୁ ।'

—'ନାଇଁ ଆଜି ନୁହଁ, ମୁଁ ପରା ବାପା ଆସିବେ ବୋଲି ଜଗିଚି । ବିଛଣାକୁ ଗଲେ ମୁଁ ଶୋଇପଡ଼ିଚବି, ମୋତେ ନିଦ ମାଡ଼ିବ ।'

ତା' ବେକରେ ଟିକି ହାତଟିଏ ଗୁଡ଼େଇ ହେଇଯାଉଚି—'ନାଇଁ ମାଡ଼ିବନି, ଚାଲ୍ ଗପ କହିବୁ ।' ସିଏ ଟଣାହେଇ ଯାଉଚି ଶୋଇବା ଘରକୁ ।

—'କୋଉ ଗପ କହିବି କୁହ, କୋଉ ଗପ ? ଗଧିଆ ବାଘ, ମିଁମିଁକା, ଅଗ୍ନାଅଗ୍ନି ବନସ୍ତ' ସ୍ନୋହ୍ବାଇଟ୍‌ସବୁ ଗପ ଦେହରେ ଟିପ ମାରିଲାକ୍ଷଣି ଝାଡ଼ିଝୁଟି ଉଠନ୍ତି ଗପମାନେ ଶୋଇଲା ମନ ଗହୀରରୁ । ନିଜ ପିଲାଦିନର କେତେ କଥା ବି ଲାଗିଥାଏ ତହିଁରେ ମୁହୂର୍ତ୍ତକେ ତାଳପତ୍ର ମେଲେଇ ଫିଟିପଡ଼େ । ଜାଣିଚୁ ଝିନୁ, ବୁଲୁ ନୁହଁ, ତୋ ସାନମାମୁ, ଆମ ପିଲାଦିନେ କଣ କରୁଥିଲା ? ଜ୍ୟାକ୍ ଏଣ୍ଡ ଦ ବିନ୍‌ସିଡ୍ ଗପ ପଢ଼ି ସବୁ ରକମର ମଞ୍ଜି ଆଣି ପକଉଥିଲା ଆମ ଶୋଇଲା ଘର ଝର୍କାବାଟେ ବାହାରକୁ, କାଳେ କୋଉ ଗଛ ବଢ଼ିଯିବ ସେମିତି ଆକାଶ ଯାଏଁ ବୋଲି ।'

ରିନ୍ନୁ କହୁଚି—'ଜାଣିଚୁ ମା ଝିନ୍ନୁ ବି ସେମିତି, ଗପକୁ ସତ ବୋଲି ଭାବେ, ସିଲେଇ ମେସିନ୍ ଉପରେ ଚାଦର ଘୋଡ଼େଇ ଦେଇ ତାକୁ ବାଘ ବୋଲି କହେ ।'

ଝିନ୍ନୁ ହସୁଚି, କହୁଚି—'ନାଇଁ, ମୁଁ ଜାଣିଚି ବାଘ ଜଙ୍ଗଲରେ ଥାଏ । ଘର ଭିତରକୁ କଣ ବାଘ ଆସେ ?'

ବାହାରେ ରିକ୍ସା ଘଣ୍ଟି ଶୁଭିଲା କି ? ନାଇଁ, କିଏ ଗଲା ରାସ୍ତାରେ । ଘର ଭିତରେ ବାଘ ଥାଏ କି ବଣରେ, ଝିନ୍ନୁ ଏମିତି ସ୍ଥିର କରିପାରୁନଥିବ ଏବ ଭଳି ତା' ଜୀବନ ସାରା । ପିଲାଦିନେ ଜୟନ୍ତୀ ବି ସେ ବିଶ୍ୱାସ ପାଇଥିଲା, ଏଇଟା ଘର ଭିତର ନିରାପଦ । ବାଘ, ରାକ୍ଷସ, ବଣ ଜଙ୍ଗଲ ସବୁ ପଦାରେ । ତା'ପାଇଁ ଦରକାର ହେଲେ ଲଢ଼ିବାକୁ ମହଜୁଦ୍ ଥିବେ ଲୋକ ସବୁଦିନେ । ତାପରେ କ୍ରମେ କ୍ରମେ ଦୃଶ୍ୟ ସବୁ ବଦଳି ଲାଗିଲା ଏମିତି, ଏଇଲାଗେ ଯାହା ସବୁଠୁ ନିରାପଦ ଘରପରି ଲାଗୁଥାଏ ପରମୁହୂର୍ତ୍ତରେ ପାଲଟିଯାଏ ପର, ଅଚିହ୍ନା । ଜଙ୍ଗଲ ବୋଲି ଭୟ ଲାଗୁଥିବା ଅଚିହ୍ନା ଜାଗା ଆପଣାର ପାଲଟିଯାଏ । ଯୁଝିବାକୁ ଅଣ୍ଟା ଭିଡ଼ି ତିଆର ହେଲାପରେ ବାଘଟିଏ ବି ମିଛ ପାଲଟି ଲୁଚିଯାଏ ।

ବାହାରେ ଏଥର ରିକ୍ସା ରହିଲା, ନିଶ୍ଚୟ । ଭବେଶଙ୍କର ସ୍ୱର ବି ଶୁଭିଲା । ମିନିଟିକେ ଆଖି ଲାଗି ଆସୁଥିବା ପିଲା ଦି'ଟା ଯାଇ ଘର ବାହାରେ । ଜୟନ୍ତୀ ଲୁଗା ସଜାଡ଼ି ବାହାର ବାରଣ୍ଡାରେ ଗୋଡ଼ ଦେଲା ବେଳକୁ ସେମାନେ ଯାଇ ରିକ୍ସାରେ ଚଢ଼ିଲେଣି । ଭବେଶ ପାଟି କରୁଛନ୍ତି—'ଓ ହୋ, ବ୍ୟାଗ୍‌ଟା ଥାଉ ରିନ୍ନୁ, ଖୋଲ୍‌ନା କହୁଚି ଏଇନା । ନେଇ ଚାଲ୍ ଆଗ ଭିତରକୁ ।'

ଶୋଇଲା ଆବହାଓ୍ୱା ଚେଇଁ ଉଠୁଚି ମୁହୂର୍ତ୍ତକେ ।

—ଏତେ ଡେରି ହେଲା କଣମ ? ଆମେ ତ ଭାବିଥିଲୁ...

—ଏଇପରା ଆଜି ସଞ୍ଜବେଳେ ହେ ହେ ରିନ୍ନୁ, ସେଇଟା ଖୋଲ୍‌ନା ପରା କହିଲି ।

—ମା' ରୁଟି କରିବି, ନା ଆଉ ଟିକିଏ ଗଲେ ?

—ବାପା ବାପା ନାନୀ ମୋ ଏରୋପ୍ଲେନ୍ ଭାଙ୍ଗିଦେଲା ମୋତେ ଆଉ ଗୋଟେ କିଣିଦେବ ।

—ହଉ ହଉ କର ରୁଟି କର ଆଗ । ଖାଇନା କି ଏଯାଏଁ କେହି ?

—ରିନ୍ନୁ ତୋତେ ପରା ବାପା ମନାକଲେ ? ହଁ କ'ଣ କହୁଥିଲ ଆଜି ସଞ୍ଜବେଳେ ?

—ସଞ୍ଜବେଳେ ନୁହେଁ ମ, ଚାରିଟାବେଳେ। ଗଉରୀ, ପାଣିଅଛି ଗାଧୁଆ ଘରେ ?

—ବାପା ପାଣି ସବୁ ଧଳା ଦିଶୁଚି, ଝିନୁ ପୁଣି କୁଣ୍ଡରେ ସାବୁନ୍ ପକେଇ ଦେଇଚି, ଦେଖିବ ଯାଉନା।

—ମା, ଦିଆସିଲି ନାଇଁ ଗୋଟେ କାଢ଼ି ଦେବ।

—ତୁ ଗଲୁ ଗଉରୀ, ଟ୍ୟୁବ୍‌ୱେଲରୁ ପାଣି ବାଲ୍‌ଟିଏ ଆଗ ଆଣିଦେବୁ। ହଁ, କଣ ହେଲାମ ଆଜି ଚାରିଟାବେଳେ ?

—ବସ୍ ଫେଲ୍ ହେଲି ପରା ସେ ଶଳା ତିଓ୍ୱାରୀ ଯୋଗୁ, ରହ କହୁଚି। ମା ଟାଓ୍ୱେଲ୍‌ଟା ଦେଲୁ।

—ବାପା ଝିନୁକୁ ଏରୋପ୍ଲେନ୍ ଦେବନି ସାବୁନ୍ ପକେଇଚି କୁଣ୍ଡରେ। ଆଉ ବ୍ୟାଗ୍ କେତେବେଳେ ଖୋଲିବ ?

—ବ୍ୟାଗ୍‌ରେ ନାଇଁ କିଛି, ସୁଟ୍‌କେଶରେ ଅଛି, ଖୋଲୁଚି ରହ।

—ଯାଆ ତମେ ଦି'ଟା, ଗଲ ଶୋଇବ। କାଲି ସକାଳେ ଖୋଲାହେବ ସୁଟ୍‌କେଶ୍। ମଣିଷକୁ କଥାପଦେ କୁହେଇ ଦେଉନାହାନ୍ତି।

ଏମିତି ଦିନଟିଏକୁ ଅନେଇ ବସିଥାଏ ସେ, ଆଉ ଚାଲିଗଲା ପରେ ପୁଣି ନିଛାଟିଆ ବେଳେ ଫେରି ଫେରି ଅନାଏ। ଏଇ ଗୋଲିଆ ପୋଲିଆ ମୁହୂର୍ତ୍ତ କେଇଟି ବାସ୍ତବରେ କଣ କେଜାଣି—ଅପେକ୍ଷିତ ସମୟଟିଏ। ଖୁସି-ଆଶ୍ଚର୍ଯ୍ୟ-ଚିଡ଼ିଚିଡ଼ି-ଅଧୈର୍ଯ୍ୟ ସବୁ ମିଶାମିଶି। ଆଉ ଯାହା କିଛି ହେଉ ନହେଉ କ'ଣ ଗୁଡ଼ିଏ ଘଟିଯାଉଥାଏ ନିଜର ଅତି ପାଖରେ। ଫାଙ୍କାପଣ ଲାଗି ଆଉ ଜମାରୁ ଜାଗା ନଥାଏ। ସତେକି ତା ଘରସାରାର ଯେତକ ଖାଲି ଜାଗାଯାକ ଭରିଯାଉଚି ନାହିଁନଥିବା ସବୁ ଘଟଣାରେ।

ଖୋଲା ସୁଟ୍‌କେଶ୍ ଉପରେ ହାମୁଡ଼େଇ ପଡ଼ିଛନ୍ତି ଦିହେଁ। ଭବେଶ ଉଚ୍ଛୁଳି ହସୁଚନ୍ତି, ଖେଳନାକୁ ଟେକି ଧରି ଛକାପଞ୍ଝା ଖେଲୁଚନ୍ତି ପିଲା ଦୁହିଁଙ୍କ ସାଙ୍ଗରେ। ନାଲିଟା ମୋର। ନାଇଁ ନାଇଁ ମୁଁ ଆଗ କହିଚି, ମୋର। ଗଲାଥର ବି ତୁ ନାଲି ନେଇଥିଲୁ। ମୁଁ ନେଳୀ ନେଇଥିଲି। ଦେଇଦେ ମା, ତାକୁ ଦେଇ ଦେ, ମୋ ସୁନାଝିଅ ପରା। ମୋର ଦର୍କାର ନାଇଁ, ସେ ନେଉ ନେଉ ସବୁ। ସିଏ ତ ତମର ଗେହ୍ଲା।

ହେଉଟି କହି ଦେଉଚି, କଳି କରିବ ଯଦି ପୁଣି ପୂରେଇଦେବି ବାପାଙ୍କ ସୁଟ୍‌କେଶ୍‌ରେ। ନେଇଯାଆନ୍ତୁ ସେ ପୁଣି। କିଛି ଗୋଟାଏ ଆଣିଲେ ଖୁସିହେବା ଛାଡ଼ି ଖାଲି କଳି କଜିଆ। ଆଉ ତମେ ଖାଇବ ନା ନାହିଁ ମ।

ଗଉରୀ ରୁଟି କରିଦେଇ ଗଲାଣି ତା ଘରକୁ । ଚୁଲିରୁ ଓହ୍ଲା ଖାଇବା ଜିନିଷ ଥଣ୍ଡା ହେଇଯାଉ, ଯାଏଆସେ ନାହିଁ । ଏବେ ତାର ଖିଆପିଆ ଶୁଆଉଠା ସବୁ ହେବ ସ୍ୱତନ୍ତ୍ର ଗୋଟିଏ ଲେଖାଁ ଘଟଣା । ପାଖଦେଇ ଚାଲିଯାଉଥିବା ଛାୟାଗୁଡ଼ିଏ ନୁହେଁ, ରେଲଗାଡ଼ି ବାହାରେ ପଛମୁହାଁ ଧାଇଁ ପଳାଉଥିବା ଗାଁ ଗଣ୍ଡା ନୁହେଁ ।

ଖାଇସାରି ଭବେଶ ଏଥର ପିଲାଙ୍କୁ ଗପ କହୁଥିଲାବେଳେ ଜୟନ୍ତୀ ନିଶ୍ଚିନ୍ତରେ ରୋଷେଇ ଘର କବାଟ ଦେଲା, ଆଶ୍ୱାସନାରେ ଲମ୍ୱା ନିଶ୍ୱାସ ଟାଣିଲା । ଭବେଶ ଜୟନ୍ତୀ ଓ ତାଙ୍କ ଦୁଇ ପିଲାଙ୍କ ଘର ସଂସାର ଏ । ବାହାରେ ଯେଉଁ ସହର ଥାଉ, ଘର ମାଲିକ ପ୍ରତି ଛ'ମାସରେ ଭଡ଼ା ବଢ଼ାଉଥାଉ ସେସବୁ ଏ ସଂସାରକୁ ଛୁଇଁ ପାରିବ ନାହିଁ । ଦିନ ଥିଲା, ଯେତେ ଦିନ ଥାଉଁ ଥାଉଁ ଭବେଶ ଆସିଲେ ବି ଚାହୁଁଚାହୁଁ ସନ୍ଧ୍ୟା ହେଇଯାଏ, କଥା ଜମାରୁ ସରିନଥାଏ, ହଷ୍ଟେଲର ଲୁହାଗେଟ୍ ପାଖେ ଆଟେଣ୍ଡାଣ୍ଟ ଡାକେ—ଦିଦି, ଗେଟ୍ ପଡ଼ିବ ଏଥର । ମନ ଭାରୀ ହେଇଯାଏ, କେତେ କଥା ଗପିବାକୁ ଥିଲା ଆଉରି । କେଜାଣି କେମିତି ସେ ଦିନ ଆଉ ଆସିଲା ନାଇଁ କେବେ, ଯେମିତି ଜୟନ୍ତୀ ମନ କରିଥିଲା, ଯେ ପାଖରେ ଅସରନ୍ତି ଗପ ବି ମହଜୁଦ୍ ଥିବ, ଅପର ଜଣକ ଥିବ ହାତପାଆନ୍ତାରେ । ଏବେ ପରିବେଶ ବଦଳିଥାଉ, ସମୟ ବିତିଥାଉ ବୟସ ପଛକେ ବଦଳେଇ ଦେଇଥାଉ ଅନୁଭବ ଅନୁଯାୟୀ ମନକୁ ବି, ତଥାପି ଆଗ୍ରହ ଉତ୍ସାହ ମରିନାଇଁ ଦିହିଙ୍କର ଏକାଠିପଣଲାଗି । ଏତିକି ସାଙ୍ଗସୁଖ ତୁଳନାରେ ସେମାନେ ବାକିତକ କଟାଉଥିବା ସମୟଯାକ ପାଣିଚିଆ ଅର୍ଥହୀନ । ଶୋଇବା ଘରକୁ ଫେରି ଆସୁଆସୁ ସେ ଦେଖିଲା ଅଗଣାରେ ଚଉକିଟା ପଡ଼ିଚି ଏବେବି । ଉଠେଇବାକୁ ପଦାକୁ ଆସିଲାବେଳକୁ ମୁଣ୍ଡ ଉପରେ ତାରା ଭର୍ତ୍ତି ଆକାଶ—ଅବାକ୍ ଲାଗିଲା ତାକୁ—ଯେ ମୁହୂର୍ତ୍ତକେ ଭରିଯାଉଚି ଛାତି ବିରାଟ କିଛି ଗୋଟାଏ ପାଇଥିବାର ସୁଖରେ, ପୁଣି ସେହିକ୍ଷଣି ଏ ଆକାଶ ଭୁଲେଇ ଦେଉଚି ଚାରିପାଖର ଟିକି ଅଗଣା ଘରକୁ, ଉଠେଇ ନେଉଚି କାହିଁ କୁଆଡ଼େ ଦିଗ୍‌ବିଦିଗ୍ ଡେଇଁ ସମୟକୁ ଭେଦିଯାଇ କେଉଁ ଗୋଟିଏ ଅଦୃଶ୍ୟ ବିନ୍ଦୁକୁ, ଯେଉଁଠୁ ଦେଖିଲେ ଏଠି କିଛି ଦେଖାଯାଉନାହିଁ ତୁଚ୍ଛ ବାଲି-ଧୂଳି ଛଡ଼ା ।

ପରଦିନ ସକାଳୁ ଦାନ୍ତ ଘଷୁ ଘଷୁ ଭବେଶ କହିଲେ—''ଏ ଲୋକଟା ବସ୍ତି ମଝାମଝି ଏମିତି ମଇଁଷି ପାଳିଚି, ବଡ଼ ଗନ୍ଧ ହେଉଚି । କେହି ମନା କରୁନାହାନ୍ତି କେମିତି ଏଠି ?''

ଜୟନ୍ତୀ ଗୃହାଳ ମାଲିକର ତରଫଦାରୀ କଲାପରି କହିଲା, ସବୁଦିନେ ଏତେ ଜଣାପଡ଼େନି ତ କାଇଁ, ଆଜି କେମିତି ବେଶୀ ଜଣାଯାଉଚି ସତରେ । ବରଂ ଅନ୍ୟଦିନ ଗୋଟେ ରକମ ଫୁଲର ସୁନ୍ଦର ବାସ୍ନା ଆସେ ।

ମୁହଁ ଧୋଉଧୋଉ ସେ କହିଲେ—'ଶାସ୍ତ୍ରୀର ପୁଅ ହେଲା, ଶୁଣିଚ ନା ? ସେ ସାଧୁବାବାଙ୍କ କଥା ଯାହେଉ ସତ ହେଲା ।'

କୋଉ ଶାସ୍ତ୍ରୀ କି ସାଧୁବାବା ପଚାରିବା ଦରକାର ନାଇଁ । ଉତ୍ତରରେ—'ସତରେ ? ଯାହାହେଉ ଭଲହେଲା' କହିବା ଯଥେଷ୍ଟ ।

ଦିନ ବଡ଼ୁବଡ଼ୁ ବାକି ଥିବା ଗପଟକ କୁହାହେଲା । ଭବେଶର ସାନଭାଇ ସୁରେଶ ଲାଗି ଝିଅ ଦେଖା ପ୍ରସଙ୍ଗ । ଆରପାଳି ୱିକେଣ୍ଡ ସାଙ୍ଗକୁ ଦିଦିନ ଛୁଟି ନେଇ ଯଦି ଜୟନ୍ତୀ ଯାଆନ୍ତା ବାହାଘର ଲାଗି ବଜାରପତ୍ର କରିବାରେ ସାହାଯ୍ୟ କରନ୍ତା ।

—'ଚାଲୁନା ନହେଲେ ଚାରିଛଅଦିନ ଛୁଟି ନେଇ ରାୟପୁର ଚାଲିଯିବା, ଗହଣା, ଶାଢ଼ି ସବୁ ତମେ ପସନ୍ଦ କରି କିଣିବ୍, ବୁଲାବୁଲି ବି ହେବ ।'

ଜୟନ୍ତୀ ଚୁପ୍ ହେଇଗଲା କିଛି ସମୟ । କହିଲା—ଆଉ କିଛି ଦିନ ପରେ ଗଲେ ହୁଅନ୍ତା ନି ? କଲେଜର ଫଙ୍କସନ୍ ଅଛି । ସରିଲେ ଶୀଘ୍ର କୋର୍ସ ସାରିବାକୁ ହେବ । ଛୋଟ କଲେଜ କିନା, ପୂରା ଦାୟିତ୍ୱ ପଡ଼ିଯାଏ ।

ସଞ୍ଜବେଳେ ଘେରାଏ ବୁଲିଆସି ଭବେଶ କହିଲା ଜୟନ୍ତୀକୁ—'ତମର ଏ ଜାଗାଟା ଗୋଟେ ଏମିତି ପୋଚରା ମଫସଲ; ସାରା ସହରଟାକୁ ଚକ୍କରେ ଲଗାଇ ଆସିବାକୁ ଘଣ୍ଟାଏ ଲାଗୁନାଇଁ । ଗେଞ୍ଜି ଆଣିବାକୁ ଭୁଲିଯାଇଚି ଯେ ଭଲ ବ୍ରାଣ୍ଡର ଜିନିଷ ବି ନାହିଁ କୋଉ ଦୋକାନରେ ।'

—'ନାଇଁ ତମ ନିଜ ସହରଟା ତ ବମ୍ବେ କି ନ୍ୟୁୟର୍କ ହୋଇଥିବ ! ଗଲାଥର ପିଲାଙ୍କ ଜାମା କିଣା ମନେଅଛି ?'

—'ଆରେ ହଉ, ଯାହା ହଉ । ନିଜ ଘର, ଆପଣା ସହର ସିଏ । ତା କଥା ଅଲଗା । ଆଉ ତମେ ଦୀପାବଳୀ ବେଳକୁ ଦେଖିବ ସେଠି କେମିତି ଷ୍ଟକ୍ ଆସେ ।'

ଜୟନ୍ତୀ ମନେପକେଇଲା ସେ ସହରର ଦୋକାନ ବଜାରକୁ ଯେଉଁଟି ତାର ଆପଣାର ସହର ବୋଲାଏ । ଅତି ବେଶୀରେ ସପ୍ତାହେ ଦଶଦିନ ରହେ ସେ ଏକାଦିକ୍ରମେ ଶାଶୁଘରେ । ନୂଆ ହୋଇ ଗଲାବେଳେ ଓଢ଼ଣା ଦେଇ ଭିତରେ ରହୁଥିଲା ! ଦୂର ଜାଗାର ଝିଅ ହେଇଥିଲେ ବି, ପାଠୋଇ ହୋଇ ବି, ନିଜ ଇଛାରେ ସ୍ୱାମୀକୁ ବରଣ କରି ବି, ପରିବାର ବନ୍ଧୁବାନ୍ଧବ ଭିତରେ ଥିବା ଅନ୍ୟ ଯା ବୋହୂଙ୍କଠାରୁ ଆଦୌ ଭିନ୍ନ ନୁହେଁ ବୋଲି ସେ ପ୍ରମାଣ କରିବାକୁ ଚେଷ୍ଟାକରୁଥାଏ ପ୍ରାଣପଣେ ସେତେବେଳେ । ସହର ବଜାର ବୁଲି ଦେଖିବାର ବିଶେଷ ସୁଯୋଗ ପାଇନି କେବେ ।

ଭବେଶ କହିଲେ—'ତମକୁ କହିଥିଲି ନା ଏଥର ମିନିଷ୍ଟର ପୁଣିଥରେ କଥା ଦେଇଚି ଆମ କଲେଜରେ ସୋସିଓଲୋଜି ଖୋଲିବ ବୋଲି। ତମ ଲାଗି ମୁଁ ଆଗରୁ କହିରଖିଚି ଲୋକଙ୍କୁ। ଥରେ ଖାଲି ଖୋଲିଯାଉ।'

ରବିବାର ଦିପହର ଖିଆପିଆ ସରିଲାବେଳକୁ କଲେଜର ରିହର୍ସାଲ୍‌ବାଲା ଝିଅ ଦଳକ ଆସି ପହଞ୍ଚିଲେ—'ମାଡାମ୍, ନିମ୍ମି ରୋଲ କରିବନି ମନା କରିଦେଲା।'

—'କଣ ହେଲା ? କାଲି ପରା ଭଲରେ ରିହର୍ସାଲ୍ କଲ ? କଳି ହେଲା ନା କଣ ?'

—'ନାଇଁ ମାଡାମ୍, ତା ବାହାଘର ଠିକ୍ ହେଇଗଲା, ତାଙ୍କ ଘରେ ଏବେ ମନା କରୁଚନ୍ତି।'

—'ଆଛା କଥା। କାଲି ଯାଏ ଠିକ୍ ଥିଲା, ଆଜି ହଠାତ୍ ନିୟମ ମାଡ଼ିପଡ଼ିଲା। ବାହାଘର ତ ହେଇଯାଇନାଇଁ। ଆଜି ଆସିଚି ସେ ?'

ଭିତରେ ଉବେଶ ପଚାରିଲେ—'କୁଆଡ଼େ ବାହାରିଲ ? କଣ ସମୟ ନାହିଁ ଅସମୟ ନାହିଁ ଚାଲିଆସୁଚନ୍ତି ମ ଘରକୁ ? କାଇଁ ତମେ ଏସବୁରେ ମାତିଛ କହିଲ ?'

ଚାରିଟାବେଳେ ଜୟନ୍ତୀ ଫେରିଲା ବେଳକୁ ଭବେଶ ପିଲାଙ୍କ ପାଠ ଦେଖୁଥିଲେ, ରିନୁର ଖାତା ବନ୍ଦ କରିଦେଇ କହିଲେ—'ଏମିତି ଜାଗାରେ ରହି ପିଲାଙ୍କ ପାଠପଢ଼ା ଯଦି ନିଜେ ନଦେଖିବ କଣ ମଣିଷ ହେବେ ଏମାନେ ?'

ଜୟନ୍ତୀ ଚା' କରିବା ଲାଗି କହିଲା ଗଉରୀକୁ। ଭାବିଲା ସେ ନୂଆ ଦିନମାନଙ୍କରେ କଥା ଏଇଠି, ଯେତେବେଳେ ସେ କଲେଜ ଝିଅଙ୍କ ଫଙ୍କସନ୍‌ରେ ମାତୁନଥିଲା, ସହରର ଲୋକବାକ ଦୋକାନ ବଜାର କିଛି ଚିହ୍ନି ନଥିଲା। ସେତେବେଳେ ସକାଳୁ ସଞ୍ଜଯାକେ ପୁଣି ସଞ୍ଜ ପହର ରାତିରେ ନିଦ ପଡ଼ିଲାଯାକେ ସମୟ ତାର କେମିତି କଟୁଥିଲା, ଭବେଶ କଣ ବା ଜାଣେ।

ଅଗଣାରେ ଚଉକି ଦିଇଟା ପକେଇଲା ବେଳକୁ ଭବେଶ କହିଲେ—'ମୁଁ ଭାବୁଚି ଆଜି ଚାଲିଯାଏ। ସକାଳୁ ଉଠି ଏଠୁ ଯାଇ ସାଙ୍ଗେ ସାଙ୍ଗେ କ୍ଲାସ୍ ନେବା ବଡ଼ କଷ୍ଟ।'

ଜୟନ୍ତୀ ସବୁଥର ପରି କାକୁତି କଲା—'ରିନୁ ଝିନୁ ମନକଷ୍ଟ କରିବେ ଆଜି ଗଲେ। ମୁଁ ରାତିରେ ସବୁ ଜିନିଷ ସଜାଡ଼ି ଦେଇଥିବି, ସକାଳୁ ଉଠେଇ ଦେବି। ଆଜି ଯାଅନି।'

ଘଣ୍ଟାକ ପରେ ଅଗଣାରେ ପିଲା ଦିହିଙ୍କ ସାଙ୍ଗେ ବସି ସମସ୍ତେ ମୁଢ଼ି ଭଜା ଖାଆନ୍ତି। ପିଲାଙ୍କୁ କହନ୍ତି ଭବେଶ, 'ଆରଥରକୁ ମୁଁ ଆସିଲେ ସମସ୍ତେ ଯିବା ଏକାଠି ରାୟପୁର, ତମପାଇଁ ସବୁ ବଢ଼ିଆ ଜିନିଷ କିଣିବା।'

—'ଆଉ ରବିବାରକୁ ବାପା ?' କହେ ।

ଜୟନ୍ତୀ କହେ—'ନାଇଁ ନାଇଁ, ପରେ । ତମର ଏଥରର ପରୀକ୍ଷାଟା ସରୁ ।'

ତା'କଥାକୁ କାନ ନଦେଇ ଭବେଶ କହିଲେ, 'ଆଚ୍ଛା ଜୟନ୍ତୀ, ଆଉ ପାଳିକୁ ତମେ ଚାଲିଆସ ପିଲାଙ୍କୁ ନେଇ । ମୋର ଜମିବାଡ଼ି କାମଗୁଡ଼ା ଅଛି, ଆସିପାରିବିନି । ବାପାଙ୍କ ମେଡ଼ିକାଲ ଚେକ୍ଅପ୍ ବି ହବାର ଅଛି ।'

ଜୟନ୍ତୀ ଚୁପ୍ ହେଲା ଟିକିଏ । ପୁଣି କହିଲା—'ଦିଟା' ଦିନ ପାଇଁ ଯିବି, ପିଲାଙ୍କ ପରୀକ୍ଷା ଅଛି ।' ବାକି କଲେଜ ପିଲାଙ୍କ ଫଙ୍କସନ୍ କଥା ଇତ୍ୟାଦି ସେ ଏଥର ଢୋକିନେଲା ।

ଗଉରୀ ପାଟି କରୁଚି ପିଲାଙ୍କୁ—'ଆଜି ଆଉ ଖାଇବେ ନା କଣ ଏମାନେ ? ଦେଖିବ, ନଖାଇଲେ ବାପା ଆଉଥରକୁ ... !'

ଗୁହାଳ ଗନ୍ଧ ସାଙ୍ଗେ ଫୁଲ ବାସ୍ନା ଆସୁଚି । ଭବେଶ କହୁଚନ୍ତି—'ଶାସ୍ତ୍ରୀର ଯୋଉ ପ୍ଲଟ୍‌ଟା ନଥିଲା ସିନେମା ହଲ୍ ପାଖରେ, ଗୋଟେ ବଡ଼ ଘର ତିଆରି କରୁଚି ଏବେ । କାଲେ ତା ବାପା ଭାଇଙ୍କଠୁ ଅଲଗା ରହିବ ଏଥର ।'

ଜୟନ୍ତୀ କାଲି ସାରା ଦିନର କାର୍ଯ୍ୟସୂଚୀ ତିଆରି କରୁଥିଲା ମନେ ମନେ । ସଞ୍ଜବେଳୁ ପିଲାଙ୍କ ହୋମ୍‌ୱାର୍କଟା କରେଇ ଦେବ ଯେ ସେକେଣ୍ଡ୍ ଇଅର୍‌ର ଟେଷ୍ଟ୍ ପାଇଁ ପ୍ରଶ୍ନପତ୍ର ତିଆରି କରିଦେବ ତାପରେ । ପ୍ରିନ୍‌ସିପାଲ ଦିଥର ତାଗିଦା ଦେଲେଣି ।

❑❑❑

# ରେଖାଚିତ୍ର

ତୃତୀୟ ଥର ଲାଗି ଏକାଭଳି ଦୃଶ୍ୟଟି ଦେଖିଲେ ପ୍ରଶାନ୍ତ । ଠିକ୍ ସେ ଅଫିସ୍‌ରୁ ଫେରିଲା ବେଳକୁ ଯୁବକଟି ତାଙ୍କ ଘରେ ଡ୍ରଇଂରୁମ୍‌ରେ ବସିଚି ଓ ଚା’ ଆଦି ଆତିଥ୍ୟ ପାଉଚି । ଦୃଶ୍ୟରେ ସାମାନ୍ୟ ଟିକିଏ ଲେଖାଁ ଯାହା ଫରକ୍ । ପ୍ରଥମ ଦିନ ସେ ଅଧାପିଆ ଚାହାକପ୍ ଥୋଇ ଠିଆ ହେଇପଡ଼ି ନମସ୍କାର କରିଥିଲା ଓ ପ୍ରଶାନ୍ତ ପଦେଅଧେ କ’ଣ କଥା କହି ଉପର ମହଲାକୁ ଚାଲିଗଲାବେଳେ ଶୁଣିଥିଲେ ତାପ୍ତି ବଳେଇବା ସତ୍ତ୍ୱେ ସେ, ‘ନା ମାଡ଼ାମ୍, ଆଉ କେବେ ଆସିବି, ସାର୍ ଏଇନେ ଫେରିଚନ୍ତି’ ବୋଲି କହୁଥିଲା । ଦି’ ଚାରିଦିନ ପରେ ସେ ପୁଣି ପଶିଆସିଲା ବେଳକୁ ତାକୁ ନିଜ ହାତରେ ଗରମ ପକୁଡ଼ି ପରଷୁଥିଲେ ଓ ଯଥାବତ୍ ନମସ୍କାର ଓ ପଦେଅଧେ କଥା ପରେ ତାପ୍ତିଙ୍କର ବଳେଇବାରେ ସେ କହିଲା, ‘ସାର୍ ଖାଇବେନି’ ? ଓ ତାପ୍ତିଙ୍କ ଉତ୍ତରରେ ସନ୍ତୁଷ୍ଟ ହେଲାଭଳି ପୁଣି ବସି ପ୍ଲେଟ୍ ଉଠାଇଲା । ତୃତୀୟଥର ଟ୍ରେରେ ଏକାଧିକ ଚା-ଜଳଖିଆ ସରଞ୍ଜାମ ଥିଲାଭଳି ତାଙ୍କୁ ଜଣାଗଲା; କିନ୍ତୁ ପ୍ରଶାନ୍ତ ଆଜି ବ୍ୟସ୍ତ ମୁଦ୍ରାରେ ନମସ୍କାରକୁ ମୁଣ୍ଡ ଟୁଙ୍ଗାରି ଦେଇ ଭିତରକୁ ମଚ୍‌ମଚ୍ ହୋଇ ଚାଲିକଲେ । ପଛରୁ ବାରିଲେ, ଏହାପରେ ଡ୍ରଇଂରୁମ୍‌ର କଥାବାର୍ତ୍ତା ତାଙ୍କୁ ଊହ୍ୟ କରିଦେଇ ପୂର୍ବରୁ ଚାଲିଥିବା କେଉଁ ଗୋଟାଏ ବିଶେଷ ଧରଣର ପୋଷାକୁକୁରର ଗୁଣଗ୍ରାମ ବିଷୟ ନେଇ ଆଗେଇ ଚାଲିଲା ।

ଯୁବକଟି ତାଙ୍କର ଅଚିହ୍ନା ନୁହେଁ । ତା’ ନାଆଁ ଦିଗନ୍ତ ମଲ୍ଲିକ ଓ ତା’ ବାପା ତାଙ୍କର ଜଣେ ପୂର୍ବତନ ସହକର୍ମୀ, ଯିଏ ପାଞ୍ଚବର୍ଷ ତଳେ ରାସ୍ତା ଦୁର୍ଘଟଣାରେ ମରିଯାଇଥିଲେ । ଦିଗନ୍ତ ବାସ୍ତବରେ ଯୁବକ ବି ନୁହେଁ, ଟୋକାଦିଶିଆ ବୟସ୍କ ଲୋକଟିଏ । ସେଇ ଧରଣର ବୟସ୍କ, ଯେଉଁମାନେ ଚାକିରି-ବାକିରି-ବାହାସାହା ଥଇଥାନର ବୟସକୁ ଅନାୟାସରେ ପାରି ହେଇଯାଇ ବେଶବାସ ଚେହେରାରେ ଯୁବସୁଲଭ ଛବଟିଏ ବନେଇ ରଖିଥାନ୍ତି ଓ ବିଚିତ୍ର ଭାବେ ଆଖପାଖ ଲୋକଙ୍କଠୁ ସ୍ନେହ, ସମ୍ବେଦନା, ଆତିଥ୍ୟ ସବୁ ପାଇଚାଲିଥାନ୍ତି ।

ଦିଗନ୍ତର ପରିବାର ସାଙ୍ଗରେ ପୂର୍ବରୁ ଚିହ୍ନା ପରିଚୟ ଥିଲେ ବି ତା’ ବାପାଙ୍କ ମରିବା ପରେ ଆଉ କିଛି ସମ୍ପର୍କ ନଥିଲା । ଖାଲି କେବେ କେମିତି, ଭୋଜି ବନ୍ଧୁମିଳନ

ବେଳେ ସାଙ୍ଗସାଥୀଙ୍କଠାରୁ ଟିପ୍‌ପ୍‌ଣୀ ଶୁଣିଛନ୍ତି— 'ଜାଣିଲେ ନା, ବିଚରା ମଲ୍ଲିକର ପୁଅଟା ଡାହାବାଲୁଙ୍ଗା ହୋଇଗଲା ।' ଏକଥା ଉଚ୍ଚାରିତ ହେଲାବେଳେ ଉପସ୍ଥିତ ଲୋକେ ନିଜ ନିଜ ଜୀବନର ଦୁଃଖ ସବୁ ସାମୟିକ ଭାବେ ପାସୋରି ପକାନ୍ତି ଓ ମଲ୍ଲିକବାବୁ ତାଙ୍କ ଚାକିରି ଜୀବନରେ ଠୁଳେଇ ଥିବା ବେହିସାବ ସମ୍ପତ୍ତି କଥାଟାକୁ ବି ଉଦାରଭାବେ କ୍ଷମା କରି ପକାନ୍ତି ସଭିଏଁ ।

ଏବେ ପୁଣି ଦିଗନ୍ତ ଏଇ ସହରରେ କିଛି ଗୋଟାଏ ବ୍ୟବସାୟ ଆରମ୍ଭ କରିଥିଲା ଓ ପ୍ରକୃତରେ ତା' ସାଙ୍ଗେ ଦେଖାହେଲାବେଳକୁ ପ୍ରଶାନ୍ତ ତା' ନାଆଁଟା ବି ଭୁଲିଯାଇଥିଲେ । ଦିଗନ୍ତ ତାଙ୍କ ଘରକୁ ମିଠେଇ ପ୍ୟାକେଟ୍ ନେଇ ଆସିଥିଲା ଓ ନିଜ ପରିଚୟ ଦେଲାପରେ ତାଙ୍କୁ ଅଙ୍କଲ୍ ପରିବର୍ତ୍ତେ ସାର୍ ବୋଲି ଡାକୁଥିଲା । ଯାର ଛ' ମାସ ପରେ ପୁଣି ସେ ତାକୁ ନିଜ ଘରେ ଦେଖୁଥିଲେ ।

ସେ ଲୁଗା ବଦଳି ତଳ ମହଲାକୁ ଓହ୍ଲେଇଲା ବେଳକୁ ତାଙ୍କ ପରିବାର ଖାଇବା ଟେବୁଲ୍‌ରେ ବସି ସାରିଥିଲେ । ତାପ୍ତି ସବୁଦିନ ଭଳି ଭ୍ରୂ କୁଞ୍ଚେଇ ପିଲାଦିହିଙ୍କୁ ପାଠପଢ଼ା ବିଷୟରେ ଜେରା କରିବା ପରିବର୍ତ୍ତେ ଖୁସିଗପ କଲାଭଳି ଜଣାଯାଉଥିଲେ । ପ୍ରଶାନ୍ତ ଦୀର୍ଘଶ୍ୱାସଟିଏ ଛାଡ଼ି ମୃଦୁ ହସିଲେ । ନିଜକୁ ମନେପକାଇ ଦେଲେ ପୁରୁଣା ନୀତିବାକ୍ୟଟି—ସବୁ କଥାର ଗୋଟିଏ ଭଲ ଦିଗ ଅଛି । କଳାହାଣ୍ଡିଆ ମେଘ ଦେହରେ ବି ଜଳଜଳ ରୂପାଧଡ଼ିଟିଏ ଥାଏ ।

ତାପ୍ତି ସ୍ୱାମୀଙ୍କ ମୃଦୁହସକୁ ଲକ୍ଷ୍ୟ କଲେ । ପୁରୁଣା ଘରଣୀପଣିଆରୁ ତାଙ୍କ ମନକୁ ପଢ଼ିଲେ ଓ ନିଜକୁ କହିଲେ ଭଲ ଭଲ । ବାତୁଲବାତୁ ପଚାରିଲେ—'ଆଜି ତମର ଟିକେ ବେଶୀ ଡେରି ହେଲା । କ'ଣ ଜରୁରୀ ମିଟିଂ ଫିଟିଂ ଥିଲା କି ?

ଉତ୍ତର ଦେବା ଜରୁରୀ ମନେ ନକରି ପ୍ରଶାନ୍ତ ଖାଇବା ଆରମ୍ଭ କଲେ । ପଚାରିଲେ—''ସେ ପିଲାଟା ଏତେଥର କ'ଣ ଆସିଲାଣି ? କିଛି କାମଦାମ ଜୁଟିଲାଣି ନା ନାହିଁ ତାକୁ ?''

— ''ତା ନିଜ ବ୍ୟବସାୟ କରୁଛି ପରା, ଭୁଲିଗଲଣି, ମିଠେଇ ଆଣିଥିଲା ?''

ମୁଣ୍ଡ ଟୁଙ୍ଗାରି ପ୍ରଶାନ୍ତ ମନେ ପକେଇଲେ—''ହୁଁ, ହୁଁ ।''

— ''ତା ମା' ମୋଠୁଁ ବୟସରେ ବଡ଼ ହେଲେ ବି ଭଲ ସାଙ୍ଗ ଥିଲେ । ଆମ କ୍ଲବ୍‌ର ବି ସକ୍ରିୟ ମେମ୍ବର ଥିଲେ ବିଚାରୀ ।''

— ''କାମରେ ଆସିଥିଲା କି ?''

— "ଆଉ କ'ଣ । ତମେ ତ ମୋଟେ ଅନଉନା ତା' ଆଡ଼େ । ପିଲାଟା ଭରସିକି କିଛି କହିପାରୁନି ତମକୁ ।"

ପ୍ରଶାନ୍ତ ଖାଉଖାଉ ତାଙ୍କୁ ପୁଣି ଆଗେଇବାକୁ ଦେଇ କହିଲେ—"ହୁଁ, ହୁଁ" ।

—"ଇଣ୍ଟିରିଅର୍ ଡିଜାଇନିଂ କୋର୍ସଟିଏ କରିଆସିଛି ସେ ବମ୍ବେରୁ । ହେଲେ, ଏ ଜାଗାଟା ଏମିତି ଯେ କାମ ପାଉନି । ମୁଁ ଭାବୁଥିଲି ଆମ ନୂଆ କ୍ଲବ୍‌ଘରର ଭିତର ଡେକୋରେସନ୍ କାମଟା ତାକୁ ଦେଲେ କେମିତି ହୁଅନ୍ତା ? ବାହାର ବଗିଚାର ଲ୍ୟାଣ୍ଡସ୍କେପିଂ ବି ସେ କରିପାରିବ ।"

ଏତିକିରେ ପିଲା ଦିହେଁ ଅନ୍ୟକଥା ଆରମ୍ଭ କଲେ । ଖିଆପିଆ ସରିଲା ପରେ ତାପ୍ତି ପୁଣି କଥାଟା ଉଠାଇଲେ—"ତମେ ଟିକିଏ ଭାବି କୁହ ମ । ମିସେସ୍ ମଲ୍ଲିକଙ୍କ ପାଇଁ ଅନ୍ତତଃ ଆମର କ'ଣ କିଛି ଦାୟିତ୍ୱ ଥିବା କଥା ନୁହେଁ ?"

ପ୍ରଶାନ୍ତ ତାପ୍ତିଙ୍କ ମୁହଁକୁ ଚାହିଁ ହସିଲେ । କହିଲେ—"ତମ କ୍ଲବ୍ ଘର । ମୁଁ କହିବି କ'ଣ ? ହେଲେ ଏଡ଼େ ତରବରରେ କିଛି କରିପକାଅ ନାହିଁ । ତାକୁ କେତେ କାମ ଆସେ ବୁଝ, ଅନ୍ୟ ସମସ୍ତଙ୍କ ରାୟ ନିଅ ।"

ତାପ୍ତିଙ୍କ ଉତ୍ସାହ ଟିକିଏ ଥଣ୍ଡା ପଡ଼ିଗଲା । କହିଲେ—"ସେଥିଲାଗି ତ କହୁଥିଲି ତମେ ଟିକେ ତା ସାଙ୍ଗେ କଥାବାର୍ତ୍ତା କରନ୍ତ । କ୍ଲବ୍ ନହେଲା ନାହିଁ, ତମ କମ୍ପାନୀର କିଛି କାମ ତାକୁ ଦେଇପାରନ୍ତ ।"

ପ୍ରଶାନ୍ତ ଜର୍ଣ୍ଣାଲ୍ ଖଣ୍ଡିଏ ଓଲଟାଉଥିଲେ । କହିଲେ—"ହଉ ଦେଖିବା ।" ହେଲେ ଆଜିକାଲିର ଏଇ ସାଜସଜ୍ଜାରେ ବିଶେଷଜ୍ଞ ବୋଲାଉଥିବା ଲୋକଙ୍କ ଉପରେ ତାଙ୍କ ଇଞ୍ଜିନିୟର ମନ ଆଦୌ ଭରସା କରିପାରେନି । ତା' ପୁଣି ଦିଗନ୍ତ ମଲ୍ଲିକ ପରି ଲୋକ । କଥାବାର୍ତ୍ତା କରିବାକୁ ଅଛି କ'ଣ ତା' ସଙ୍ଗେ ?

ସେ ପ୍ରସଙ୍ଗ ବଦଳାଇ ପଚାରିଲେ—"ତମେ ନୂଆ ପେଣ୍ଟିଂ କିଛି କଲଣି ଏ ଭିତରେ ?"

"ନାଇଁମ । ସମୟ ମିଳୁଛି କୋଉଠୁ ।"

ଏଥର ପ୍ରଶାନ୍ତ ଖୋଲାଖୋଲି ମଧୁର ବ୍ୟଙ୍ଗରେ ହସିଲେ ।—"ସମୟ !" ପୁଣି ଇଂରାଜୀ ଉକ୍ତିଟିଏ ଉଦ୍ଧାର କଲେ, "କାମଟିଏ ନକରିବା ଲାଗି ସବୁବେଳେ କିଛି-ନା-କିଛି-ଆଳ ଥାଏ, ବୁଝିଲ ।"

ତାପ୍ତି ଦୁଃଖିତ ସ୍ୱରରେ କହିଲେ—"ବୁଝୁଛି । ଆରମ୍ଭ କରିବି କିଛି ଗୋଟାଏ ବୋଲି ଭାବୁଛି ଦିନାକେତେ ହେଲା ।"

ପ୍ରଶାନ୍ତ ଉଠୁ ଉଠୁ କହିଲେ—''ନାଗପୁରର ସେ ଗ୍ୟାଲେରୀଟା ରିଜର୍ଭ କରିଦେଇଛି, ପ୍ରଦର୍ଶନୀର ତାରିଖ ଆସିଲା ବେଳକୁ ତମର ପେଣ୍ଟିଂ ତିଆରି ହୋଇ ନଥିଲେ ମଉକାଟା ହାତରୁ ଯିବ ନା ନାହିଁ ?''

ପ୍ରଶାନ୍ତ ଉପରକୁ ଚାଲିଗଲେ ଶୋଇବା ଲାଗି, ତାପ୍ତି ଉଠି ତାଙ୍କ ପଛେ ପଛେ ଗଲେ; କିନ୍ତୁ ଶୋଇବା ଘରକୁ ନୁହେଁ, ତାକୁ ଲାଗିଥିବା ଅନ୍ୟ ରୁମ୍‌ଟିକୁ, ଯାହାକୁ ସେ ଷ୍ଟୁଡିଓ ବୋଲି କହନ୍ତି । ସେଠି ତାଙ୍କ ରଙ୍ଗ ତୂଳୀ ଆଦି ପେଣ୍ଟିଂ ସରଞ୍ଜାମ ବାହାରେ ଆଲମାରିର ଗୋଟିଏ ଥାକରେ ଠାକୁର ଓ ଅନ୍ୟ ଦି' ଥାକରେ ବହି । ରୁମ୍‌ର ଗୋଟିଏ କୋଣରେ ସିଲେଇ ମେସିନ୍ ତଥା ଅଧାତିଆରି ସିଲେଇ କାମ ସବୁ ବି ଥାଏ । ସେ ଅଧାତିଆରି ଦିଇଟା ପେଣ୍ଟିଂ ପାଖେ ଅନ୍ୟମନସ୍କ ଥିବାବେଳେ ଶୋଇବାଘରୁ ପ୍ରଶାନ୍ତ ଡାକଦେଲେ, ''ଆଜି ଶୋଇପଡ଼ । ରାତି ହେଲାଣି । କାଲିଠୁ କାମ ଆରମ୍ଭ କରିବ ।''

ସତକଥା । ପ୍ରଶାନ୍ତଙ୍କ ଜୀବନ ଯଦି କାର୍ଯ୍ୟବ୍ୟସ୍ତ ତାପ୍ତିଙ୍କର ବି କିଛି କମ୍ ନୁହେଁ ।

ପରଦିନ କିନ୍ତୁ ସ୍କୁଲ କାମରୁ ଫେରି ଘରେ ଖିଆପିଆ କାମ ସାରି ଉପରଓଳି ରଙ୍ଗ ତୂଳୀ ତିଆରୁଚନ୍ତି, ଦିଗନ୍ତ ଆସି ପହଞ୍ଚିଲା । ତାପ୍ତି ମନେ ମନେ ଟିକିଏ ବିରକ୍ତ ହେଲେ, ଏଥର ଟିକେ ଖୋଲାଖୋଲି ତିଆରି ଦେବାକୁ ହେବ । ସମୟ ଅସମୟ ବୋଲି କିଛି ନାହିଁ ନା କ'ଣ ? ସେ କିଛି କହିବା ପୂର୍ବରୁ କ୍ଷମାମାଗିଲା ସ୍ୱରରେ ଦିଗନ୍ତ କହିଲା, ''ଏମିତି ଅସମୟରେ ଚାଲିଆସିବା ମୋର ଜମା ଉଦ୍ଦେଶ୍ୟ ନଥିଲା ମାଡାମ୍ । ଆପଣଙ୍କ କ୍ଲବ୍‌ର ସାଜସଜା ଲାଗି ବ୍ଲୁପ୍ରିଣ୍ଟ ତିଆରି ସରିଗଲା ଯେମିତି, ଭାବିଲି ଦେଇଦେଇ ଚାଲିଯିବି ।''

ତା' ହାତରୁ ନକ୍‌ସା କାଗଜ ନେଇ ଟେବୁଲ୍ ଉପରେ ଖୋଲୁଖୋଲୁ ତାପ୍ତି କହିଲେ—''ହଉ ଆସିଲଣି ତ, ବସ । ବୁଝେଇ ନଦେଲେ ଏସବୁ କାଗଜରୁ କ'ଣ ବୁଝିପାରିବି ।''

ତାପ୍ତିଙ୍କ ହାତରୁ କାଗଜ ନେଇ ଗର୍ବରେ ଦିଗନ୍ତ ନିଜେ ଖୋଲି ପକେଇଲା । ନୀଳ ରଙ୍ଗର ନକ୍‌ସା ଦୁର୍ବୋଧ ରେଖାଚିତ୍ରଗୁଡ଼ିଏ ନେଇ ଟେବୁଲ୍ ଆବୋରି ପକାଇଲାବେଳେ ତାପ୍ତିଙ୍କୁ ଟିକିଏ କେମିତି ଅବସନ୍ନ ଲାଗିଲା । ସେ କହିଲେ—''ଅସଲରେ ଆଜି ଗୋଟାଏ ପେଣ୍ଟିଂ ଆରମ୍ଭ କରୁଥିଲି । ଆଗରେ ଏକ୍‌ଜିବିଶନ୍ ଟା ଅଛି ତ ।''

ଦିଗନ୍ତର ଆଖି ନେଳି କାଗଜରୁ ଉଠି ତାଙ୍କୁ ମୁହଁରେ ଲାଗିଗଲା । ଓଠ ମେଲି ହେଇଗଲା ଅଳ୍ପଟିକିଏ । ତାପ୍ତି ତରବରରେ କହିଲେ—''ନାଇଁ ନାଇଁ, ଏଇଟା ବି ତ ମୋ ପେଣ୍ଟିଂର ପାଖାପାଖି କାମ । ମୋର ଶିଖିବାର କଥା ।''

ହେଲେ ଦିଗନ୍ତ ଅପମାନିତ ହେଉନଥିଲା, ବରଂ ଅଭିଭୂତ ସ୍ୱରରେ କହିଲା—''ଆପଣ ତେବେ ରୀତିମତ ଜଣେ ଆର୍ଟିଷ୍ଟ ମାଡାମ୍ ? ସରି, ମୁଁ କେମିତି ଜାଣି ନଥିଲି ।''

ଏଥର ତାପ୍ତି ଅପ୍ରସ୍ତୁତ ହେଇ କହିଲେ—''ଆରେ ନାଇଁ ନାଇଁ, ସେମିତି ବିଖ୍ୟାତ ଏଯାଏଁ ହେଇନି, ଲୋକେ ଜାଣିଲା ଭଳି ।''

ନିଜ ଡ୍ରଇଂକୁ ଫେରି ଯାଉଯାଉ ଦିଗନ୍ତ କହିଲା—''କେବେ ଆପଣଙ୍କ ପେଣ୍ଟିଂ ଦେଖିବାକୁ ସୁଯୋଗ ଦେବେ ମାଡ଼ାମ୍ ।''

ନକ୍‌ସା ବୁଝାବୁଝି କାମ ସରିଲାବେଳକୁ ତାପ୍ତି ହଠାତ୍ କହିଲେ—''ଦିଗନ୍ତ, ଚାଲ ଗୋଟେ କାମ କରିବା । ଆମ କ୍ଲବ୍ ଘଟଟା ଏଠୁ ବେଶୀ ବାଟ ନୁହେଁ, ଭଲ ପାଗ କରିଚି ଆଜି, ଚାଲ ଯାଇ ଦେଖିଆସିବା । ମୋତେ ବେଶୀ ଭଲ ବୁଝାପଡ଼ିବ ତମ ଆଇଡିଆମାନ ।''

ସେଦିନ ସନ୍ଧ୍ୟାରେ ତାପ୍ତି ନିଜ ଷ୍ଟୁଡିଓକୁ ଯାଇ ପେଣ୍ଟିଂ ପଟା ସାମ୍ନାରେ ବସିଲେ, ଅଧା ତିଆରି ପେଣ୍ଟିଂଟାକୁ ଗୋଟିଏ ନୂଆ ମୋଡ଼ ଦେବାକଥା ଚିନ୍ତାକଲେ ଓ ଭାବିଲେ—'କାହାର କେଉଁ ଦିଗ କେତେବେଳେ ଦୃଶ୍ୟହୁଏ, ଦେଖ । ସେଇଥିଲାଗି ପରା ଅଙ୍କେନିଭା ପେଣ୍ଟିଂମାନ ଅନ୍ୟକୁ କିଛି ବୁଝାପଡ଼େ ନାହିଁ, ମିଛ ପେଖନା ପରି ଲାଗେ ।'

ଯା' ପରେ ପ୍ରାୟ ଦିଗନ୍ତ ଆସେ, ସାଜସଜ୍ଜାର ପତ୍ରିକା ବାହାରେ ତାର ବିଭିନ୍ନ ପ୍ଲାନ୍‌ର ରେଖାଚିତ୍ର ଆଣି ଦେଖାଏ, ଓ ତାପ୍ତି କେତେଥର କହନ୍ତି- ''ବଡ଼ ଇଣ୍ଟରେଷ୍ଟିଂ ସତରେ ଏ କାମ । କେବେ ସମୟ ପାଇଲେ ମୁଁ ବି ନିଶ୍ଚେ କରିବି ।''

ହେଲେ ଦିଗନ୍ତକୁ କ୍ଲବ୍ ଘର କାମଟା ଦେବାକଥା ଜମା ଠିକଣା ହେଇପାରେ ନାହିଁ । ପ୍ରଶାନ୍ତ କେବେ ଶୀଘ୍ର ଫେରନ୍ତି ଅଫିସ୍‌ରୁ ତ କେବେ ବେଶ୍ ରାତିରେ । ଦିନେ ଦିନେ ସେ ଦେଖନ୍ତି ଲନ୍‌ର ଗୋଟିଏ ଫୁଲଗଛ ଘେରା କୋଣରେ ଟେବୁଲ ଉପରେ ଖାଲି କପ୍ ପ୍ଲେଟ୍ ପଡ଼ିଥାଏ । ନୂଆକରି ଦେଖିଲାଭଳି ସେ ଚାରିଆଡ଼କୁ ଦେଖି ତଉଲ କରିନଅନ୍ତି, ଆଜି ସଞ୍ଜବେଳୁ ଜହ୍ନ ଉଇଁଥିଲା ବୋଲି ତାଙ୍କର ଖିଆଲ ହୁଏ ।

ଏକାଠି ବସିଥିଲା ବେଳେ ତାପ୍ତି ଯେତେବେଳେ ପ୍ରଶାନ୍ତଙ୍କ ଧାରଣା ବଦଳାଇବା ଉଦ୍ଦେଶ୍ୟ ରଖି କହିବସନ୍ତି, ''ଦିଗନ୍ତ ସାଜସଜ୍ଜା ଉପରେ ଗୁଡ଼ାଏ ବହିପତ୍ର, ମାଗାଜିନ୍ ରଖିଚି, ବୁଝିଲ ? ଆଉ ତା ମାଆଙ୍କୁ ନେଇ ଦିନେ ଆମ ଘରକୁ ବୁଲି ଆସିବାକୁ

କହୁଥିଲି ଯେ ଆଜିକାଲି ସେ କୁଆଡ଼େ ପୂରା ବଦଳି ଯାଇଚନ୍ତି । ଘରୁ କୁଆଡ଼େ ବାହାରୁନାହାନ୍ତି, ପୂଜାପୂଜିରେ ବେଶୀ ସମୟ କଟାଉଚନ୍ତି ।''

ପ୍ରଶାନ୍ତଙ୍କ ଉପରେ ବିଶେଷ ପ୍ରଭାବ ପଡ଼ିଲାପରି ଜଣାଯାଏ ନାହିଁ । ଓଲଟା ଟିପ୍ପଣୀ କରନ୍ତି—''ମୋର ତ ମନେହେଉଚି ତା'ର ଅଧେ ସମୟ ଏମିତି ବୁଲାବୁଲି, ଏଠିସେଠି ଗପିବାରେ ଯାଉଥିବ । ବ୍ୟବସାୟ କାମ କରୁଚି କେତେବେଳେ ?''

ତାପ୍ତି ଉତ୍ତର ଦିଅନ୍ତି—''ନାଇଁତ, ସେ କେତେ ଧାଁଦଉଡ଼ କରୁଚି । ବ୍ୟବସାୟରେ ସଫଳ ହେବା ପୂର୍ବରୁ ସମସ୍ତଙ୍କର ଗୋଟାଏ ଷ୍ଟ୍ରଗଲ୍‌ର ସମୟ ଥାଏ ନା ନାହିଁ ।''

ଏଥର ପ୍ରଶାନ୍ତ ଥଟ୍ଟା କରନ୍ତି—''ତମ କ୍ଲବ୍‌ଘର ଛଡ଼ା ଆଉ କିଛି କାମ ତା' ହାତରେ ଅଛି ନା ନାଇଁ ?''

ତାପ୍ତି ପାଟି ବୁଜି ସ୍ଥିର କରନ୍ତି, ରହିଥା, ତମେ ହଁ ନକଲେ ନାହିଁ । ଆମ କ୍ଲବ୍ କାମଟା ମୁଁ ତାକୁ ଦେବି । ଦିଗନ୍ତ ଆଉ ତା' ମା'କୁ ଥଇଥାନ କରିବାର, ପୁଣିଥରେ ସମାଜରେ ପ୍ରତିଷ୍ଠିତ କରିବାର ଦାୟିତ୍ୱ ମୁଁ ନେଉଚି । କେତେକାମ ତ ମୋ ହାତରେ ହେଇପାରୁଚି, ଯାହା ସେକେଣ୍ଡ଼ ଇଅର୍‌ରୁ ବାହାହେଇଗଲା ବେଳେ ମୋର କଳ୍ପନାରେ ନଥିଲା । ଏତିକି କାମ ଆଉ ପାରିବି ନାହିଁ ।

କିନ୍ତୁ ସବୁ ନିଷ୍ପତ୍ତି ପରେ ତାଙ୍କ ଧ୍ୟାନ ବୁଲିବାଲି ଫେରିଆସେ ଧ୍ରୁବତାରା ପରି ସେଇ ପ୍ରଶାନ୍ତଙ୍କଠି । ଏଯାଏଁ କଥା ଆସିଲା ବେଳକୁ ପ୍ରଶାନ୍ତଙ୍କର ନିଜ ହାତକୁ ଦାୟିତ୍ୱଟା ନେଇନେବା କଥା । ତାପ୍ତି ଆଗ୍ରହ ଦେଖାଇଥିବା କଥାରେ ଉତ୍ସାହ ଯୋଗାଇବା କଥା । ଆରମ୍ଭରୁ ତ ତାପ୍ତି ନିଜେ କାମଟିଏ କରିବାକଥା ଚିନ୍ତା ହିଁ କରିପାରୁ ନଥିଲେ । ବି.ଏ ପରୀକ୍ଷାଟା ଦେବାପାଇଁ ତାଙ୍କୁ ଖାଲି ରାଜି କରେଇବାକୁ ପ୍ରଥମେ ପ୍ରଶାନ୍ତଙ୍କୁ କେତେ ପରିଶ୍ରମ କରିବାକୁ ପଡ଼ିଥିଲା । ତା'ପରେ ଏମ୍.ଏ., ପେଣ୍ଟିଂରେ ଶିକ୍ଷା, ଇଂରାଜୀ ସ୍କୁଲ୍‌ରେ ଡ୍ରଇଂ ଶିକ୍ଷୟିତ୍ରୀ କାମ, କ୍ଲବ୍ କାମ, ଚିତ୍ରକଳା ପ୍ରଦର୍ଶନୀ । ସ୍ୱାମୀ, ଘର, ପିଲାଙ୍କ ସୁଖ, ଉତ୍ତରୋତ୍ତର ପ୍ରାପ୍ତି ବାହାରେ ଏତେସବୁ କଥା । ହାତରେ ତୂଳୀ ଧରି ତାପ୍ତି ବେଳେବେଳେ ଚୁପ୍‌ଚାପ୍ ବସିରହନ୍ତି । ପରିପୂର୍ଣ୍ଣ ମନରେ ଭାବନ୍ତି—ସତରେ କ'ଣ ଏସବୁ ସମ୍ଭବ । ଜୀବନ ଏମିତି ଆଗକୁ ଆଗକୁ ସୁନ୍ଦର ଫିଟି ଫିଟି ଯାଉଥିବା ? ଗୋଟିଏ ପରେ ଗୋଟିଏ ସଫଳତା ଗୋଟେଇ ଗୋଟେଇ ଯାଉଥିବା ? ପୂର୍ଣ୍ଣଚ୍ଛେଦ ଆସିଯିବ କି କେବେ ହଠାତ୍ ? ନା, ସେ କେବେହେଲେ ନିଜକୁ ଅଟକବନ୍ଦୀ ହେଇଯିବାକୁ ଦେବେନାହିଁ ଗୋଟିଏ ଜାଗାରେ । ବା ପ୍ରଶାନ୍ତ ତା' ହେବାକୁ ଦେବେନାହିଁ ।

ସେଇଠି ତାଙ୍କର ନିଃଶ୍ୱାସ ଅଟକିଯାଏ । ପ୍ରଶାନ୍ତ ହିଁ ? ତା'ପରେ ଅଦ୍ଭୁତଭାବେ ତାଙ୍କ ମୁଣ୍ଡ ଭିତରୁ, ଆଙ୍କିବାକୁ ଯାଉଥିବା ଚତ୍ରର ଛବି ଉଭେଇଯାଏ । ଆଜି ପୁଣି ସେ ଧନ୍ଦି ହେଉଛନ୍ତି, କ୍ଲବ୍ କାମ ଲାଗି ହଁ କରିବେ, ପ୍ରଶାନ୍ତ ହିଁ ?

ଏତେ ବେଳ ଚୁପ୍‌ଚାପ୍ ଦେଖି ଅଭ୍ୟସ୍ତ ଗୃହସ୍ଥ ଭଳି ପ୍ରଶାନ୍ତ ପୁଣି କଥା ଆରମ୍ଭ କଲେ—''ଆଉ ଟୁପି, ତମ ନୂଆ ପେଣ୍ଟିଂ କେତେଦୂର ଗଲା ?''

''ଆରମ୍ଭ କରିଚି, ସରିଲେ ଦେଖେଇବି ।''

''ପୁରୁଣା ଦିଇଟା ଅଧାକରି ପକେଇଥିଲ, ପ୍ରଥମେ ସାରିଦେଉନା ।''

''ସାରିଲେ ଦେଖେଇବି ।''

''କାନଭାସ୍ ମଗେଇଦେବି ? ନହେଲେ ପୁଣି ସରିଗଲେ ତରବରରେ ଏଠା ବଜାରରୁ କିଣିବ, ବାଜେ ଜିନିଷ, ବେଶୀଗୁଡ଼ାଏ ଦାମ୍ ଦେବ ।''

''ଏବେ କାନ୍‌ଭାସ୍ ଅଛି ଯଥେଷ୍ଟ ।''

''ପେଣ୍ଟିଂସବୁ ଫ୍ରେମ୍ କରିବାକୁ ବି ସମୟ ଲାଗିବ, ଖିଆଲ ଅଛି ନା ନାହିଁ ? ଜଣେ ଭଲ ଜର୍ଣ୍ଣାଲିଷ୍ଟ ସାଙ୍ଗେ ପରିଚୟ ହେଇଛି, ବୁଝିଲ ? ଭଲ ରିଭ୍ୟୁ ଛପେଇବା ଏଥର । ଲାଗିପଡ଼ କାମରେ ।''

'' ହଁ, ଆଜିଠୁ ଲାଗିପଡ଼ିବି ସତରେ ।'' ତାପ୍ତିଙ୍କ ସ୍ୱର ଏଥର ନିତାନ୍ତ ନରମ ହୋଇପଡ଼ିଥିଲା ।

ଦିନେ ସନ୍ଧ୍ୟାରେ ଲନ୍‌ରେ ବସି ଦିଗନ୍ତ ତାପ୍ତିଙ୍କଠୁ ତାଙ୍କ ପ୍ରଦର୍ଶନୀର ପ୍ଲାନ୍ ବିଷୟରେ ଶୁଣିଲା, ମୁଗ୍ଧ ସ୍ୱରରେ କହିଲା—''ଏତେ କାମ ଆପଣ କେତେବେଳେ କରନ୍ତି ଯେ ? ମୋର ବିଶ୍ୱାସ ହୁଏନି ।''

ରାସ୍ତା ବତୀଖୁଣ୍ଟରୁ ଆସୁଥିବା ପତ୍ର ଗହଳ ମିଶା ଛାଇଆଲୁଅରେ ତାପ୍ତି ଦିଗନ୍ତର ମୁହଁକୁ ଭଲକରି ଦେଖିବାକୁ ଚେଷ୍ଟାକଲେ । କହିଲେ—''ବୁଝିଲ ଦିଗନ୍ତ, ଯାହା ପ୍ରଶଂସା ମୋତେ ତମେ କରୁଛ, ଏଥିରୁ ଅଶୀଭାଗ ପ୍ରଶାନ୍ତଙ୍କର । ସିଏ ନଥିଲେ ପେଣ୍ଟିଂ କିଏ ନା ମୁଁ କିଏ ? ଏଇ ସରଞ୍ଜାମ କିଣାଠୁ ପ୍ରଦର୍ଶନୀଯାକେ ଯେଉଁ ଝମେଲା, ମୋ ଦେଇ ହୁଅନ୍ତା ଭାବିଛ ?''

ଅନ୍ୟଦିନ ପ୍ରଶାନ୍ତଙ୍କ ନାଆଁ ପଡ଼ିଲା ମାତ୍ରେ ଦିଗନ୍ତ ବି ଗଦ୍‌ଗଦ ସ୍ୱରରେ ଦି'ପଦ ପ୍ରଶଂସା ଯୋଡ଼ିଦିଏ । ଏଥର କିନ୍ତୁ ପଚାରିଲା ''ତଥାପି ପେଣ୍ଟିଂ ମାନ ତ ଆପଣ ନିଜ ମନରୁ କରୁଥିବେ, ନା ଆଇଡିଆ, ରଙ୍ଗଯୋଜନା ସବୁ ସାର୍ ବତେଇ ଦିଅନ୍ତି ?''

କାମିନୀ ଗଛର ଡ଼ାଳ ହଲି ଦିଗନ୍ତର ମୁହଁରେ ଏମିତି ହାବୁକା ହାବୁକା ଛାଇ କରୁଥିଲା ଯେ ତାପ୍ତିଙ୍କୁ ଜମା କିଛି ସ୍ପଷ୍ଟ ଦିଶୁନଥିଲା । ସେ କହିଲେ—"ନା, ପେଣ୍ଟିଂମାନ ମୋର ।"

ଦିଗନ୍ତ କହିଲା—" କେବେ ସୁବିଧା ହେଲେ ଆପଣଙ୍କ ପେଣ୍ଟିଂମାନ ଦେଖନ୍ତି ଟିକିଏ ।"

ତାପ୍ତି କେବଳ ଅଳ୍ପ ହସିଲେ ଅନ୍ୟଥର ଭଳି । ଦିଗନ୍ତ ପୁଣି କହିଲା—"ଆପଣଙ୍କ ପେଣ୍ଟିଂ ଗୋଟିଏ ହେଲେ ଏଯାଏଁ ମୁଁ ଦେଖିନି ଅଥଚ ମୁଁ ନିଜେ ନୂଆ ତ୍ରଇଂଟିଏ କଲାମାତ୍ରେ ଆପଣଙ୍କୁ ଦେଖାଇବାକୁ ନେଇଆସେ । ମୋତେ ଲାଗେ, ଆପଣଙ୍କ ବିଷୟରେ ମୁଁ ଏଯାଏଁ କିଛି ବି ଜାଣିନି । ଆଉ ଖାଲି ମୋ ନିଜ କଥା, ମୋ କାମ କଥା ଗପିଚାଲିଛି ସବୁବେଳେ ।"

ତାପ୍ତିଙ୍କ ମୁହଁରୁ ହସ ମିଳେଇ ଯିବାକଥା ସେ ନିଜେ ଜାଣିପାରିଲେ, କିନ୍ତୁ ଆଶ୍ୱସ୍ତ ହେଲେ ସେ ଛାଇ ତାଙ୍କ ମୁହଁରେ ବି ପଡୁଥିବ ।

ଏଣିକି ଦିଗନ୍ତ କିଛି କାମ କଥା କହିଲେ ତାପ୍ତି ଅପରାଧୀ ଭଳି ବୋଧ କରୁଥିଲେ ଓ କ୍ଲବ କଥା ଆଉ ଜମାରୁ ଉଠାଉ ନଥିଲେ । ଏମିତିକି ମଝିରେ କେତେଥର ଦିଗନ୍ତ ଆସିବ କି ବୋଲି ଫୋନ୍‌ରେ ପଚାରିଲେ ବାହାରକୁ ଯିବାର ଅଛି କହି ଟାଳି ଦେଉଥିଲେ । ତଥାପି ସିଏ ଅକାଳେନ ସକାଳେ ଆସି ପହଞ୍ଚି ଯାଉଥିଲା, ଏଣୁତେଣୁ ଆଳରେ । ଥରେ ତା' ଘରୁ ପୁରୁଣା ଆଲ୍‌ବମ୍‌ଟିଏ ନେଇ ଆସିଥିଲା, ଯେଉଁଥିରେ କେଉଁ ପିକ୍‌ନିକ୍‌ରେ ଅନ୍ୟ କେତେଜଣଙ୍କ ସହିତ ତାପ୍ତିଙ୍କ ଫଟୋଥିଲା । ଆଉଥରେ ତାଙ୍କ ବଗିଚାର ପିଜୁଳି ଓ ପ୍ରତିଥର ତା' ନିଜ ତିଆରି ନୂଆ କିଛି ଚିତ୍ର ନେଇ ।

ଏଥର ଦିଗନ୍ତ କହିଲା—"ମୁଁ ଉଠେ ମାଡାମ୍ । ସାର୍ ଆସିବେ, ଆପଣଙ୍କର ବି କାମ ଥିବ ।"

ତାପ୍ତି କହିଲେ—"ନାଇଁ, ବସ । କିଛି କାମ ନାଇଁ । ତାଙ୍କର ବୋଧେ ଡେରି ହେବ ।"

"ଆଉରି ଡେରି ? ସାଢ଼େ ସାତଟା ହେଲାଣି ।"

ତାପ୍ତି ହସିଲେ, କହିଲେ—"ସାଢ଼େ ସାତଟା କିଛି ନୁହଁ । ତାଙ୍କର କେମିତି କାମର ପ୍ରେସର୍ ତମେ ଜାଣିନା ।"

ଦିଗନ୍ତ ରହି ରହି ପଚାରିଲା—'' ଆପଣ ମାଇଣ୍ଡ୍ କରନ୍ତିନି ?''

''କରୁଥିଲି ଆଗରୁ ଯେ, ଧୀରେ ଧୀରେ ତାଙ୍କ ନାଚାର ଅବସ୍ଥା ବୁଝିଗଲି । ପୁଣି ମୁଁ ନିଜେ ବି ଅନେକ ନୂଆ କାମରେ ବ୍ୟସ୍ତ ରହିବାକୁ ଶିଖିଲି । ଦେଖିଲି ଏଥିରେ ବେଶୀ ସନ୍ତୋଷ ଅଛି, ଅଯଥା ସିନେମା-ନାୟିକା ଭଳି ସ୍ୱାମୀ ପଛରେ ପଡ଼ି ସମସ୍ତଙ୍କ ଶାନ୍ତି ନଷ୍ଟ କରିବା ଅପେକ୍ଷା...''

କଥାଟା ତାପ୍ତି ଟିକିଏ ନାଟକୀୟ ଭଙ୍ଗୀରେ କହିଥିଲେ, ଦିଗନ୍ତ ଜୋର୍‌ରେ ହସିଲା । ପୁଣି ପଚାରିଲା, ''କେଜାଣି, ମୁଁ ତ ସତ ଜୀବନରେ ବି ବହୁତ ସିନ୍ ଦେଖିଛି । ପିଲାଦିନେ ଘରେ, ସାଇ ପଡ଼ିଶାରେ । ଆପଣ ସତରେ କେବେ ପଚାରନ୍ତିନି କାହିଁକି ଡେରି ହେଲା ବୋଲି ।''

ତାପ୍ତିଙ୍କୁ ହଠାତ୍ ଲାଗିଲା ଯଥେଷ୍ଟ ହେଲାଣି ଗପସପ । କହିଲେ—''ତମର ବୟସ ହେଲେ କ'ଣ ହେଲା, ଅଭିଜ୍ଞତା ତ ହେଇନି । ସ୍ୱାମୀ-ସ୍ତ୍ରୀ କ'ଣ ସବୁଠି ଏକା ପରିସ୍ଥିତିରେ ଏକାଭଳି ବ୍ୟବହାର କରିବେ ବୋଲି କଥା ଅଛି ?''

ଦିଗନ୍ତ ସେମିତି ହସୁହସୁ କହିଲା— ''ଆପଣ ରାଗିଲା ଭଳି ଜଣାଗଲେଣି, ଆଉ ପଚାରିବିନି, ଥାଉ ।''

ଗତ ରାତିରେ ପ୍ରଶାନ୍ତ ରାତି ଏଗାରଟାରେ ଫେରିଥିଲେ, ପୂର୍ବରୁ ଅବଶ୍ୟ ଫୋନ୍‌ରେ ଜଣାଇ ଦେଇଥିଲେ । ପିଲାଏ ଶୋଇଯାଇଥିଲେ ଓ ତାପ୍ତି ଖିଆସାରି ବହିଟିଏ ଥରି ଢୁଳାଇ ପଡ଼ିଥିଲେ । ପ୍ରଶାନ୍ତ ପହଞ୍ଚିଲା କ୍ଷଣି ସେଦିନର କିଛି ଗୋଟାଏ ଘଟଣା ବିଷୟରେ କହୁଥିଲେ; କିନ୍ତୁ ନିଦ ଯୋଗୁଁ ତାପ୍ତିଙ୍କୁ କିଛି ବୁଝାପଡୁନଥିଲା । ଶୋଇବା ଘରେ ପହଞ୍ଚି ବିଛଣାକୁ ଯିବାପୂର୍ବରୁ ତାପ୍ତିଙ୍କର ଖିଆଲ ହେଲା କିଛି ଗୋଟାଏ କହିବା ଉଚିତ । କହିଲେ, ''କାଲିଠୁ ଏଆର୍‌କଣ୍ଡିସନର୍‌ଟା ଚାଲୁନି ମ । ଦି'ଥର ତମ ପି.ଏ. କୁ ଫୋନ୍ କରିଥିଲି, କାହାକୁ ପଠେଇଲାନି ।''

ଲୁଗା ପାଲଟୁ ପାଲଟୁ ପ୍ରଶାନ୍ତ କହିଲେ—''କାଲି ଦେଖିବା । ଆଜି ତ ଗରମ ବି ନାହିଁ ।''

•

ତା'ପରେ ପ୍ରଶାନ୍ତ ବାଥ୍‌ରୁମ୍‌ରେ ପଶିଲେ । ତାପ୍ତି କିଛିବେଳ ବିଛଣାରେ ବସିରହିଲେ, ସେ ଲାଇଟ୍ ଲିଭାଇ ବିଛଣାକୁ ଆସିବା ଯାଏଁ । ଅଥଚ ଦିଗନ୍ତ ଜିଦ୍ ଧରିଛି କିଛି ଗୋଟାଏ ସିନ୍ ହେବା ଦରକାର ବୋଲି । ଏକଥା ସତ ଯେ ଅନେକ ଦିନ ତଳେ, ଏମିତି ପରିସ୍ଥିତିରେ ସେ ଭିନ୍ନ ପ୍ରକାରର କିଛି କହୁଥିଲେ, ଯେମିତିକି—'ଏତେ ଡେରିରେ ଫେରୁଛ । ସନ୍ଧ୍ୟାସାରା ମୁଁ କେମିତି ଏକୁଟିଆ କଟେଇଥିବି, ଟିକିଏ ଭାବିଛ ଭଲା !' ଇତ୍ୟାଦି ।

ପ୍ରଶାନ୍ତ କିନ୍ତୁ ତାଙ୍କୁ ସ୍ନେହରେ, ଧୈର୍ଯ୍ୟରେ ବୁଝାଇ ଦେଇଥିଲେ ଯେ ପ୍ରତି ସଫଳ ପୁରୁଷ ପଛରେ ଜଣେ ନାରୀ ଥାଏ । ଆଉ ଏକଥା ବି ନିଶ୍ଚୟ ସତ ହେଇଥିବ ଯେ ସେଇ ନାରୀଟି ଲୁହ ଅଭିମାନ ନେଇ କେବେ ହେଁ ସ୍ୱାମୀକୁ ସ୍ୱାଗତ କରୁନଥିବ ।

ତାପ୍ତି ଧୀରେ ଧୀରେ ବୁଝିଲେ ଯେ ଏମିତି ହିଁ ଘଟେ ଜୀବନରେ ଉଣାଅଧିକେ । ଏଭଳି କୌଣସି କଥା ନାହିଁ, ବ୍ୟବହାର ନାହିଁ, ଅନୁଭବ ନାହିଁ, ଯାହା ଘଷରା ପୁରୁଣା ନୁହେଁ, ଯାହା ଘଟେନି । ପ୍ରଶାନ୍ତ କହନ୍ତି—''ଜାପାନର ସଫଳ ସ୍ୱାମୀଟିଏ ତା' ସ୍ତ୍ରୀ ପରିବାର ସାଙ୍ଗରେ କେତେ ସମୟ କଟାଏ ଜାଣିଛ ? ତେବେ ଚାରିଆଡ଼େ ଘୂରୁଥିବା ଅସୁନ୍ଦର କଥା ସବୁ ନିଜ ଜୀବନରେ ଦୋହରାଇବା କି ଦରକାର ? ଆଉ କ'ଣ ସବୁ ଅଛି ଦୁନିଆରେ, ଦେଖ, ଖୋଜ ।''

ସତରେ ତାପ୍ତିଙ୍କୁ ଚାହୁଁଚାହୁଁ ଦିଶିଯାଇଥିଲା, ମିଳିଯାଇଥିଲା ଅନେକ ଉପାୟ, ସୁଖ, ସନ୍ତୋଷ ପାଇଲା ଭଳି, ଜୀବନରେ ମିଳୁନଥିବା କଥାସବୁକୁ ଭୁଲିଗଲା ଭଳି । ଅବଶ୍ୟ ଏଥିରେ ବି ସେ ନୂଆ ନୁହନ୍ତି, ସଭିଏଁ ଉଣାଅଧିକେ କ୍ରମେ ସନ୍ତୋଷ ପାଇବାର ଏଇ ରାସ୍ତାମାନ ଧରନ୍ତି, ଖାଲି ଯାହା ବାଛନ୍ତି ଯିଏ ଯାହାର ଭିନ୍ନ ଭିନ୍ନ କଥା, ନିଜ ବୁଦ୍ଧିବୃତ୍ତି ଅନୁଯାୟୀ ।

ଏଥର ଦିଗନ୍ତ ଯିବାଲାଗି ଉଠିଲା ଓ ତାପ୍ତି ବି ଉଠୁଉଠୁ ହଠାତ୍ ପ୍ରସଙ୍ଗ ବଦଳାଇ କହିଲେ—''ଆମର ସେ କ୍ଲବର କଣ୍ଟ୍ରାକ୍ଟ ବିଷୟଟା ଏଯାଏଁ ଠିକ୍ ହେଇ ପାରିଲାନି ଦିଗନ୍ତ । ମିଟିଂଟାଏ ଡାକି ଅନ୍ୟ କେତେଜଣଙ୍କ ମତ ନେବାକୁ ପଡ଼ିବ ତ ।''

ଦିଗନ୍ତ ବିନୟରେ କ'ଣ କହିଥାଆନ୍ତା; କିନ୍ତୁ ଠିକ୍ ଏତିକି ବେଳକୁ ପ୍ରଶାନ୍ତ ଆସି ପହଞ୍ଚିଲେ । ସମ୍ଭାଷଣ ପରେ ଦିଗନ୍ତ ବାହାରି ଯିବାକୁ ବସିଥିଲା, ସେ ତା' ପିଠିରେ ହାତ ରଖି କହିଲେ—''ଯିବ ତ, ଆସ ଆମଘରେ ଖାଇଦେଇ ଯାଅ, ଆଜି ଶୁଣିବା କଣସବୁ କାମ କରୁଛ ଆଜିକାଲି ।''

ଦିଗନ୍ତ ଗଦ୍‌ଗଦ ଦିଶିଲା । ବାରଣ୍ଡାର ଆଲୁଅରେ ପ୍ରଶାନ୍ତ ଦେଖିଲେ, ଦାମିକା ଉପହାରଟିଏ ପାଇଲେ ଯେମିତି ଦେଖାଯାଏ ସେମିତି ଦିଶୁଥିଲା ତାପ୍ତିଙ୍କ ମୁହଁ ।

ଖାଇବା ଟେବୁଲ୍‌ରେ ପ୍ରଶାନ୍ତ ଓ ଦିଗନ୍ତ ଭିତରେ ହିଁ କଥାବାର୍ତ୍ତା ଚାଲିଥିଲା, ତା ପାଠ, ପ୍ଲାନ୍ ଓ କାମ କଥା । ତାପ୍ତି ଏକପାଖିଆ ଆଡ଼େଇ ହେଇଯାଇଥିଲେ, ପରଷାପରଷିରେ ଲାଗି କଥାବାର୍ତ୍ତାର ଖିଅ ବି ଧରିପାରୁନଥିଲେ, ଖିଆ ଶେଷ ହେଲା ବେଳକୁ ଗୁରୁସୁଲଭ ସ୍ୱରରେ ପ୍ରଶାନ୍ତ ବୁଝାଉଥିଲେ, ''ଅସଲ କଥା ହେଲା ଆତ୍ମବିଶ୍ୱାସ, ନିଜ ବିଦ୍ୟା ଉପରେ, ସାମର୍ଥ୍ୟ ଉପରେ ସଫଳତା ହିଁ ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଏ, ଆହୁରି ସଫଳତା ଆଣିଦିଏ, ବୁଝିଲ ?''

ଦିଗନ୍ତି ବିଗଳିତ ଭାବେ ସାର୍ ସାର୍ କହି ଲାଗିଥାଏ । ଡ୍ରଇଂରୁମ୍ ସୋଫାରେ ପୁଣି ତିନିହେଁ ବସିଲାପରେ କିଛି କ୍ଷଣର ଭାବନାରୁ ଉଠି ପ୍ରଶାନ୍ତ ଅଚାନକ କହିଲେ—''ଦିଗନ୍ତ, ତମେ ପ୍ରତିଭାବାନ୍ ପିଲା । ତମକୁ ଗୋଟେ ଭଲକାମ ଦେବି ବୋଲି ମୁଁ ଠିକ୍ କରିଛି । ଆମର ଗୋଟିଏ ନୂଆ ଅଫିସ୍ ବିଲ୍ଡିଂର କାମ । ପାରିବ ?''

ଦିଗନ୍ତର ପାଟି ଆଁ ହେଇ ରହିଗଲା, ''ସାର୍ ?''

ମିନିଟିକର ସ୍ତବ୍ଧତା କାଟି ଦିଗନ୍ତ ହାତଯୋଡ଼ି ଭାବଜଡ଼ିତ ଗଳାରେ କହିଲା—''ଆପଣ ବଡ଼ ଦୟାଳୁ ସାର୍ । କେମିତି ଏ ଋଣ ଶୁଝିବି, ଭାବିପାରୁନାହିଁ ।''

ପ୍ରଶାନ୍ତ ହୋ ହୋ ହସିଲେ । ବାଟେଇ ଦେବାକୁ ଯାଉଯାଉ ତା'ପିଠି ଥାପୁଡ଼ାଇ କହିଲେ''ଖୁବ୍ ପରିଶ୍ରମ କର, ଆଉ କିଛି ନୁହେଁ ।''

ତାପ୍ତିଙ୍କ ମୁହଁରୁ ପଦେ ହେଲେ କଥା ବାହାରି ନଥିଲା ଦିଗନ୍ତ ଯିବାଯାକେ । ଖୁସି ଗଳାରେ ପ୍ରଶାନ୍ତ କହିଲେ—''ପିଲାଟା ମନ୍ଦ ନୁହେଁ । ହେଲେ ପରିଶ୍ରମ କ'ଣ ଜାଣିନି ଆଜିଯାକେ । ମୁଁ ତାକୁ ବତେଇ ଦେବି ।'' ଓ ତା'ପରେ ଟିଭି ଅନ୍ କରି କ୍ରିକେଟ୍ ମ୍ୟାଚ୍ ଦେଖୁଦେଖୁ ଭାବିଲେ—ବାସ୍ ! ଏଥର କଥାଟାର ଫଇସଲା ହେଇଗଲା । ଆଜି ବାର୍‌ଲାଇଟ୍ ତଳେ ପରିଷ୍କାର ଦିଶିଥିବ ସ୍ତାବକର ମୁହଁ ।

ତାପ୍ତି ଚୁପ୍‌ଚାପ୍ ଉଠି ଉପରକୁ ଚାଲିଗଲେ । କ୍ରିକେଟ୍ ମ୍ୟାଚ୍ ସେ ଭଲ ପାଆନ୍ତିନି, ତେଣୁ ପ୍ରଶାନ୍ତ ପଛରୁ ଡାକିବାକୁ ଯାଇ ଅଟକିଗଲେ । ନାକପୁଡ଼ାରୁ ଛୋଟିଆ ଦମ୍ଭିଲା ନିଃଶ୍ୱାସଟିଏ ଛାଡ଼ି ନିଜ ମନକୁ କହିଲେ ପ୍ରଶାନ୍ତ, ମଣିଷର ଆତ୍ମବିଶ୍ୱାସ ଥିବା ଦରକାର ସ୍ତୁତି, ସ୍ନେହ, ମିଛ, ସତକୁ ବାରିପାରିବା ଲାଗି । ଏଇ ବୟସରେ ଭ୍ରମକୁ ପ୍ରଶ୍ରୟ ଦେଲେ କ'ଣ କରାଯାଇପାରେ ?

ତାପ୍ତି ସିଧା ଷ୍ଟୁଡିଓକୁ ଗଲେ ଓ ପଟା ସାମ୍ନାରେ ଠିଆ ହେବାକ୍ଷଣି ଅସମ୍ଭାଳ ହୋଇ କାନ୍ଦି ପକାଇଲେ । ତାଙ୍କୁ ଲାଗିଲା ସତେକି ଏଯାବତ୍ ଗଢ଼ି ଆସିଥିବା ନିଜ ବୁଦ୍ଧିବିଚାର ଉପରେ ଆସ୍ଥା ତାଙ୍କର ଧୂଆଁ ପାଲଟିଗଲା ।

ତେବେ, ଦିଚାରିଦିନ ପରେ ଯେତେବେଳେ ପୁଣି ସେ ରଙ୍ଗ ସରଞ୍ଜାମ ନେଇ ନିଜ ଷ୍ଟୁଡିଓ ବଖରାରେ କାମରେ ଲାଗିଗଲେ, ଜୀବନର ଲଗାମ୍ ପୁଣି ହାତକୁ ଫେରିଆସିଚି ବୋଲି ବିଶ୍ୱାସ ଫେରିଆସୁଥିଲା । ସେତିକିବେଳେ ଦିଗନ୍ତର ଫୋନ୍ ଆସିଲା—''ଆପଣଙ୍କର ଆଜି ସମୟ ଅଛି ? ଟିକିଏ ଆସିଥାନ୍ତି ।''

''ଆଜି ନୁହେଁ । ପୁଣି କେବେ । ଅର୍ଡ଼ର ମିଳିଗଲା ତମକୁ ?''

''ହଁ ମାଡାମ୍ । ଆଶା କରୁଛି ଆପଣ ଦୁହିଁଙ୍କୁ ନିରାଶ କରିବିନି କାମରେ ।''

''ବେଶ୍, କାମରେ ଲାଗିପଡ଼ ଏଥର । ହଉ ତେବେ ।''

ଟିକିଏ ରହି ଶୁଭିଲା—''ଆଜି ଦେଖାହେବ ନାହିଁ ମାଡାମ୍ ?''

ତାପ୍ତି ଉତ୍ତରଟିଏ ଠିକ୍ କରିପାରିଲେ ନାହିଁ ହଠାତ୍। ପୁଣି ଦିଗନ୍ତର ସ୍ୱର ଶୁଭିଲା—'' ଆଜି ଯଦି ବ୍ୟସ୍ତ ଅଛନ୍ତି, ତେବେ ଥାଉ । କାଲି ପଅରଦିନ କେବେ ଦେଖାହେବ ମାଡାମ୍ ? ଦିଇଟା ନୂଆ ଡ୍ରଇଂ କରିଥିଲି, ଦେଖେଇଥା'ନ୍ତି ।''

ଏ ସ୍ୱର ମିଛ ନୁହେଁ। କେବେ ନୁହେଁ, ଅନ୍ୟ କେତେବେଳେ ବଦଳି ଯାଉଥାଉ ପଛକେ। ହସିଲା ସ୍ୱରରେ ଏଥର ତାପ୍ତି କହିଲେ—''ହଉ ଆସ ତେବେ ଆଜି। ଚାରିଟା ବେଳେ ?''

ଦିଗନ୍ତ ଆସି ପହଞ୍ଚିଲା ଛଅଟା ପାଖାପାଖି। ତା'ହାତରୁ ଡ୍ରଇଂ କାଗଜ ନେଉ ନେଉ ତାପ୍ତି କହିଲେ—''ଏତେ ଡେରି କେମିତି କଲ ? ମୁଁ ଚାରିଟା ବେଳୁ ଅପେକ୍ଷା କରିଚି । ଭାବୁଥିଲି ଆଉ ଆସିବନି ।''

ଦିଗନ୍ତ କ'ଣ ସବୁ କହୁଥିଲା କାହିଁକି କେମିତି ଡେରି ହେଲା ବୋଲି । ଲନ୍‌ରେ ଚଉକି ପଡ଼ିଥିଲା । ରାସ୍ତା ବତୀଖୁଣ୍ଟର ଆଲୁଅ ସନ୍ଧ୍ୟାର ଆଲୁଅ ସାଙ୍ଗେ ମିଶାମିଶି ହେଇ ବିଚିତ୍ର ଦିଶୁଥିଲା । ତାପ୍ତି ସାମ୍ନା ଟେବୁଲ୍ ଆରପାଖେ ତାଙ୍କ ଆଡ଼କୁ ଝୁଙ୍କି ପଡ଼ିଥିବା ମୁହଁଟିକୁ ଦେଖୁଥିଲେ । ଏ ମୁହଁ ଧଳା ଉଜ୍ଜଳ ଆଲୁଅ ତଳେ, କାନ୍ଥ ବାଡ଼ ମଝିରେ ଯେମିତି ଦିଶିଲେ ଦିଶୁ, ମୁଁ ଡରିବି ନାହିଁ ।

ଦିଗନ୍ତ ଏବେ କହିଲା—''ମୋତେ କେମିତି ଗୋଟାଏ ଭୟ ହେଉଚି ମାଡାମ୍ । ମୋତେ କାମଟା ନ ଦେଇଥିଲେ ହିଁ ବୋଧେ ଭଲ ହୋଇଥାନ୍ତା, ମୋ ଦେଇ ଏତେ ବଡ଼ ଦାୟିତ୍ୱଟାଏ ବୋଧେ ହେଇପାରିବନି ।''

ତାପ୍ତି ଚେଷ୍ଟାକରି ସ୍ୱର ଟାଣ କରି ପଚାରିଲେ ତାକୁ, ''ସେଇଠୁ ? କ'ଣ ହେବ କାମଟା ଭଲ ନହେଲେ ? ଆଗକୁ ଆଉ କାମ ମିଳିବନି ?'' ହେଲେ ସ୍ୱର ତାଙ୍କ ବୋଲି ମାନୁ ନଥିଲା ।

ଦିଗନ୍ତ ହସିଦେଲା, ଦୋଷ ମାଗିଲା ପରି କହିଲା, ''ତା ନୁହେଁ । ଛୋଟକାଟିଆ ଅନ୍ୟ କାମ ମୋ ହାତରେ ଅଛି । ଖାଲି ଏତେ ବଡ଼ କାମଟାଏ ବୋଲି ।''

ସ୍ତୁତିମୁଦ୍ରାରେ ମଳିହେଉଥିବା ତାର ଦିହାତକୁ ଅଲଗା କରିଦେଇ ତାପ୍ତି କହିଲେ, ''ହଉ ହେଲା । ଏଠି ସମସ୍ତେ ଜାଣିଚନ୍ତି ତମେ କେଡ଼େ କାମିକା ଲୋକ, କେହି ଆଶ୍ଚର୍ଯ୍ୟ ହେବେନି । ଏଥର ତମ ଡ୍ରଇଂ ଦେଖାଅ ।''

ହେଲେ ସଞ୍ଜ ଆଲୁଅ ଆଉ ନଥିଲା । କାମିନୀ ଗଛର ଛାଇର ମାନଚିତ୍ର ବଦଳୁଥିଲା ଘାସରେ, ନକ୍ସା କାଗଜରେ, ଦୁହିଁଙ୍କ ମୁହଁରେ । ତାପ୍ତିଙ୍କର ମନେପଡ଼ିଲା । ପ୍ରଦର୍ଶନୀ ଲାଗି ଆଉ ବେଶୀ ସମୟ ନାହିଁ, କାମ ବାକି ପଡ଼ିଚି । ପ୍ରଶାନ୍ତଙ୍କ ଚିରନ୍ତନୀ ଜ୍ଞାନ । ସମୟର ସଦୁପଯୋଗ, ଆତ୍ମବିଶ୍ୱାସ, ସଫଳତା । ବ୍ୟଙ୍ଗର ଧାରଟିଏ ସେ ମୁହଁଯାଏ ନଆଣି ମନ ଭିତରେ ଲୁଚାଇଦେଲେ । ଆଗରେ ଦିଗନ୍ତ ବସିଛି, ସତେକି ସଂସାର ବୋଲି କିଛି ଗୋଟାଏ ଥିବା କଥା ସେ ଜମା ଜାଣେନାହିଁ । ତାପ୍ତି ଭାବିଲେ, ଏଇ ବର୍ତ୍ତମାନର ଟୁକୁଡ଼ାଏ ହିଁ ମୋ ପାଇଁ ସତ । ତା'ଠାରୁ ବଳି ଆଉ କିଛି ସତ ନାହିଁ ।

ଦିଗନ୍ତକୁ କହିଲେ—''ତମେ ମୋ ପେଣ୍ଟିଂ ଦେଖିବ ବୋଲି କହୁଥିଲ । ଆସ ।''

ଶିଡ଼ି ଶେଷରେ ସାନ ବାରଣ୍ଡାଟି ଟପି ଷ୍ଟୁଡିଓ ଭିତରକୁ ବାଟ କଢ଼ାଇନେଲେ ତାପ୍ତି । ଚାରିଆଡ଼େ ସଜା ପେଣ୍ଟିଂଗୁଡ଼ିକୁ ଅନେଇ ସେ କହିଲା, 'ଇସ୍, ଏତେ ଗୁଡ଼ାଏ—''

ପର୍ଦ୍ଦାମାନ ଟାଣି ଦେଉ ଦେଉ ତାପ୍ତି କହିଲେ—''ମୋ ଷ୍ଟୁଡିଓ ଭିତରକୁ ଆଣିଲି । ଋଣୀ ରହିବ ନା ନାଇଁ ?''

ମୁଣ୍ଡ ହଲାଇ ଅତି ଧୀରେ ହଁ କଲା ଦିଗନ୍ତ ।

❑❑❑

# ଏ ଗଳ୍ପରୁ ଅନ୍ୟ ଗଳ୍ପ ଯାଏଁ

ଜାହ୍ନବୀ ନିଜ ଟେବୁଲ ଦେଖିଲାକ୍ଷଣି ବୁଝିଗଲା, ପୁଣି ବାବୁଲୁ ତା କାଗଜପତ୍ର ଘଣ୍ଟାଚକଟା କରିଚି, ଗତକାଲି ଲେଖା ତା ଡାଏରି ପଢ଼ିଚି । ଚଢ଼ିଯାଉଥିବା ରାଗକୁ ଆୟତ୍ତ କରିବାକୁ ଆଗ ସେ ଚଉକୀରେ ବସିପଡ଼ିଲା । ଭାବିଲା, ଆଗ ଟେବୁଲ୍‌ଟା ସଜାଡ଼ି ନେବ ନା ବାବୁଲୁକୁ ଡାକିବ । ଦ୍ୱିତୀୟ କାମଟି କରିବା ଦରକାର ପଡ଼ିଲାନି, ବାବୁଲୁ ଧୀରେ ଆସି କୋଠରି ଭିତରେ ବାଆଁରେଇ ହେଇ ବୁଲିଲା, ହିଟ୍ ସିନେମା ଗୀତର ଶୁଷୁରି ମାରି ମାରି ।

ତେଣୁ ଜାହ୍ନବୀ ଟେବୁଲ୍ ସଜାଡ଼ି ବସିଲା । ଗୋଟିଏ ଦି'ଟା ଅଧିକା ବହିନେଇ କାନ୍ଥ-ଥାକରେ ରଖିଲା । ଏମିତି ଥରକୁ ଥର ତା ଡାଏରି ଲେଖା ଅଟକିଯାଏ । ପିଲାଦିନୁ ସେ ଗପ କବିତା ବି ଲେଖୁଥିଲା । ସବୁ ଲେଖାର ଦଶା ଉଣାଅଧିକେ ଏକାପରି ହେଇଚି । ଗପମାନ ଛିଣ୍ଡିଯାଏ ଅଧାରେ । କବିତା କଟାଛଟା ହୁଏ, ମୁଣ୍ଡି ମରାହେଇ ପାରେନି । ତା ଲେଖା ପରିବାରର ସାଧାରଣ ସମ୍ପତ୍ତି ହେଇଯାଏ, ସେଥିରୁ ପଦେଅଧେ କାହା ମୁହଁରୁ ଶୁଣାଯାଏ । ଏମିତିକି ଘରର ଏଠିସେଠି ତା କାଗଜ ପଡ଼ିଥିବାର ଦେଖି ସେ ଗୋଟେଇ ଆଣି ରଖେ । ରାଗ, ପାଟିତୁଣ୍ଡ, ମାନ ଅଭିମାନ କାହିଁରେ କିଛି ଫଳ ହୁଏନି, କାହିଁକିନା ତା ବ୍ୟକ୍ତିଗତ ସମ୍ପତ୍ତିରେ ହସ୍ତକ୍ଷେପ କରିଥିବା ଯୋଗୁଁ କେହି ଲଜ୍ଜିତ ହୁଅନ୍ତିନି । ବରଂ ଆହ୍ଲାଦିତ ହୁଅନ୍ତି କିଛି ଗୋଟାଏ ଲୁଚାଛପା କାମ ଲୋକଲୋଚନକୁ ଅଣାଯାଇପାରିଚି ବୋଲି । ସେ ଦିନେ ଭାବିଥିଲା ଲେଖିକା ହେବ, ତା ଲେଖା ଆଦୃତ ଓ ପ୍ରଶଂସିତ ହେବ, ଏପରିକି ଅର୍ଥୋପାର୍ଜନ ବି ହେଇପାରେ । ଏତେକଥା ହେବା ଦୂରରେ ଥାଉ, ଗୋଟିଏ ହେଲେ ଲେଖା ତା'ର ପୂରା ଉତରା ହେଇ ଡାକରେ ପଠାଯାଇ ପାରିଲାନି । ଡାଏରି ଲେଖା ବି ତା ହାତରେ ନା ନିୟମିତ ହେଇପାରିଲା ନା ପୂରାପୂରି ଛାଡ଼ିଦେବାକୁ ମନ ମାନିଲା ।

ମନ ମାନିଲା ନାହିଁ କେଭେ, କାହିଁକିନା ମନ ଭିତରେ ଗୁଡ଼ାଏ କଥା ଜମିଯାଏ, ଯାହା ପଦାକୁ ବାହାରିବାକୁ ବାଟ ଖୋଜେ । ଜୀବନରେ ଏତେଗୁଡ଼ାଏ ବାଟ ଚାଲିଆସିଲା ପରେ ବି ଯେଉଁ କଥାକୁ ସେଇକଥା । ଆଉ ପାଞ୍ଚଜଣ ସ୍ତ୍ରୀଙ୍କ ପରି ଜୀବନ

ହୋଇଥିଲେ କଥା ଅଲଗା ହୋଇଥାନ୍ତା, ନିତିଦିନିଆ ଘଟଣା ଭାବନା ସବୁ ଆଉ କେତେଜଣଙ୍କ ସାଙ୍ଗେ ଅନାୟାସ ବାଣ୍ଟି ହେଉଥାନ୍ତା, ଅଥବା ଗହୀର ମନ ଭିତରେ ଚାପିଦେଇ, ଏସବୁ ଅଦରକାରୀ ଅଳିଆ ବୋଲି କହି ପୋଡିପାତି ପଲସ୍ତରା କରିଦେଇ ହୁଅନ୍ତା । ତା'ର ସେ ଭାଗ୍ୟ ନାହିଁ, ଯେଣୁ ସେ ଅବିବାହିତା । ବାହା ହେବାର ସଂସାର ପାତିବାର ବୟସ ଗଡ଼ିସାରିଛି ଅନେକ ଦିନୁ । ଅଥଚ ତାକୁ ଆଶ୍ଚର୍ଯ୍ୟ କରିଦେଇ ବିଭିନ୍ନ ପ୍ରକାର କଥା ଘଟିବା, ଭାବିବାର, ଅନୁଭବ କରିବାର ବୟସ ଯାଉନାହିଁ ।

ସ୍ୱାମୀ ସନ୍ତାନ ପାଇବାର ଆଶା ମରି ସାରିଲାଣି କେବେଠୁଁ । ତେବେ, ଲେଖିକା ହେବାର ଆଶା ତଥାପି ମରିନାହିଁ । ତାଏରି ଲେଖାଛଳରେ ସେଇଟା ବି ଜୀଇଁଉଠେ ମଝିରେ ମଝିରେ । ପ୍ରଥମେ ଲେଖାଲେଖିରେ ବିଭ୍ରାଟ ଘଟୁଥିଲା ପିଲାଦିନେ, ବାପା-ମା'ଙ୍କ ସାମ୍ରାଜ୍ୟରେ ଭାଇଭଉଣୀମାନଙ୍କ ସହ ଅଧିବାସୀ ହୋଇ ରହୁଥିବାରୁ । ଚାକିରି କଲାପରେ ବି ଭାଉଭାଉଜଙ୍କ ପରିବାରରେ ରହିଲା କିଛି ବର୍ଷ । ପୁଣି ସହକର୍ମୀ ଦି'ଜଣଙ୍କ ସାଙ୍ଗେ ଭଡ଼ାଘରେ ଆଉ ପାଞ୍ଚସାତ ବର୍ଷ । ଶେଷରେ ଏଇ ପାଞ୍ଚବର୍ଷ ତଳେ ଯେତେବେଳେ ଏକୁଟିଆ ଘର ନେଇ ରହିବାର ସାହସ ଓ ସୌଭାଗ୍ୟ ତା'ର ଜୁଟିଲା, ଭାବିଲା କେବେ କେମିତି ପରିବାର ଲୋକ କିଏ ଆସି ରହିଲେ ବି ଏକଚ୍ଛତ୍ର ଆଧିପତ୍ୟ ତାଆରି ହିଁ ରହିବ ଓ ନିଜ ପଢ଼ା ତଥା ଶୋଇଲା ଘରେ ଅନ୍ୟମାନଙ୍କ ପ୍ରବେଶ ନିଷେଧ ହେବ । ତା ବି ହୋଇପାରିଲାନି । ମା ପ୍ରାୟ ଆସି ସାଥିରେ ରହିଲା ଓ ପଢ଼ାଲେଖାରେ ତା'ର ଆଗ୍ରହ ନଥିଲେ ବି ଝିଅର କାଗଜପତ୍ର ଓଲଟା ସିଧା କରି ସେ ସଜଡ଼ାସଜଡ଼ି କଲା ହଜାର ନିଷେଧ ସତ୍ତ୍ୱେ, ବାତ୍ସଲ୍ୟ ତଥା କର୍ତ୍ତବ୍ୟ ଦୃଷ୍ଟିରୁ । ଏବେ ଦି'ବର୍ଷ ହେଲା ବାବୁଲୁ ଆସି ଜୁଟିଛି । ତେର ଚଉଦ ବର୍ଷର ପୁତୁରା । ଜାହ୍ନବୀର ସାନଭଉଣୀ ତା ସ୍ୱାମୀ ସହିତ ସଡ଼କ ଦୁର୍ଘଟଣାରେ ମରିଗଲା, ବାରବର୍ଷର ପୁଅକୁ ଛାଡ଼ିଦେଇ ।

ବାବୁଲୁ ଦେଇ ଆଉ ଚୁପ୍ ରହିବା ହେଲାନି । ପାଖକୁ ଆସି ନିରୀହ ମୁହଁରେ ପଚାରିଲା, "କଣ ଖୋଜୁଥିଲ କି ମାଉସୀ ?"

ତା ମାପଚୁପ ମୁହଁଭାବ ଆଡ଼େ ଦଣ୍ଡେ ଚାହିଁ ଜାହ୍ନବୀ ପଚାରିଲା, "ଏଠି ମୋ ନାଲି ପେନ୍‌ଟା ଥିଲା, ଦେଖିଥିଲୁ କି ?"

ଠାଇଁକିନି ଜବାବ ମିଳିଲା, "ମୁଁ ତମ ପେନ୍ ନେଇଗଲି ବୋଲି କହୁଚ ? ମୋ ବାପା ମୋତେ ଆମେରିକାନ୍ ପାର୍କର୍ ପେନ୍ କିଣିଦେଇଥିଲେ, ଜାଣିଚ ନା ?"

ଜାହ୍ନବୀ ବୁଝିଲା ତାର ଠିକ୍ ଚାଲ୍ ହେଲାନି, ଭୁଲ୍ ମାନିଲା ସ୍ୱରରେ କହିଲା, "ନାଇଁରେ ବାବୁ, ବାପା ତୋର ଏତେ ପଇସା ରଖିଯାଇଚନ୍ତି, ତୁ ଗୋଟାଏ କ'ଣ

ଦଶଟା ପାର୍କର୍ ପେନ୍ କିଣିବୁ । ମୋର ଗଣ୍ଠିଆ ପୁରୁଣା ପେନ୍‌ଟା ତୋର କ'ଣ ହେବ ? ବୋଧେ କଲେଜରେ ଛାଡ଼ିଆସିଲି । ଏଇ ଡାଇରିଟା ଖୋଲା ଛାଡ଼ିଯାଇଥିଲି ନା କଣ ।''

ତାପର ପ୍ରଶ୍ନଟି ଅନ୍ଦାଜ କରି ବାବୁଲୁ କହିଲା, ''କ'ଣ ତମେ ଗାରେଇ ଥାଅ ତମ ଅକ୍ଷର ମୁଁ ଜମା ପଢ଼ିପାରେନି । ସଂସ୍କୃତରେ ଲେଖ କି ତମେ ?'' ସେ ହସି ପକେଇଲା ନିଜ କଥାରେ, ଦୋହରାଇଲା ପୁଣି, ''ସଂସ୍କୃତରେ ତାଏରି ଲେଖ କି ତମେ ମାଉସୀ ?''

ପିଲାଦିନେ ଏମିତି ହେଉଥିଲା । ଏଇ ବାବୁଲୁ ବୟସରେ ତା ସାନଭଉଣୀ ତା ଲେଖା ଲୁଚେଇ ନେଇଯାଏ । ଘରେ ବାପା, ମା'ଙ୍କୁ ଦେଖାଇ ଜାହ୍ନବୀଠୁ ବେଶୀ ବାହାବା ପାଏ ଆବିଷ୍କାର କରିଥିବା ଲାଗି । କାରଣ ବାପାଙ୍କ ଆଦେଶ ଥିଲା ଗପ କବିତା ଲେଖିବାମାତ୍ରେ ତାଙ୍କୁ ଦେଖାଇବା ଦରକାର । ଭଉଣୀ ଲେଖାରୁ ପଦେଅଧେ ବିକୃତ କରି ତାକୁ ଚିଡ଼ାଏ । ପୁରୁଣା ସମସ୍ୟାଟିକୁ ଏ ପରିଣତ ବୟସରେ ମୁକାବିଲା କରିବାକୁ ଏଯାଏଁ ଜାହ୍ନବୀକୁ ନୂଆ ଚାଲ୍ କିଛି ଭାବିବାକୁ ପଡୁଚି । ସେ ବାବୁଲୁର କଥାରେ ଆମୋଦିତ ହେଲାଭଳି ହସି କହିଲା, ''ନାଇଁରେ, ଗୋଟିଏ ଗପ ମୁଁ ଲେଖୁଚି । ଅନେକ ଦିନୁ ଅଧା ପଡ଼ିଥିଲା ତ, ପୂରା କରୁଚି ।''

ନୂଆ ଆଖିରେ ତାଙ୍କୁ ଅନେଇଲା ବାବୁଲୁ, ''ଏଇଟା ଗୋଟାଏ ଗପ ?'' ଜାହ୍ନବୀ ମୁରୁକି ହସି ମୁଣ୍ଡ ଟୁଙ୍ଗାରିଲା । ନାଚାର ହେଲାପରି ବାବୁଲୁ କାନ୍ଥଥାକର ଗଦାଗଦା ବହିମାନଙ୍କୁ ଅନେଇଲା । ସବୁବେଳେ ବହି ପଢୁଥାନ୍ତି ମାଉସୀ । ହେଇଥିବ, ସତରେ ନିଜେ ଗୋଟାଏ ଲେଖୁଥିବେ । ପଚାରିଲା, ''ତମେ ବହି ଲେଖୁଚ ?''

''ହଁ, ବହି । ଲମ୍ବା ଗପଟିଏ । ଉପନ୍ୟାସଟିଏ ବି ହେଇଯାଇପାରେ ।''

''କେତେ ପଇସା ମିଳିବ ଛପାହେଲେ ?''

ଜାହ୍ନବୀ ଭାବିଲା ଟିକିଏ, ''ମିଳିଯାଇପାରେ କିଛି ପଇସା ବି, ଭାଗ୍ୟରେ ଥିଲେ ।''

ବାବୁଲୁର ମୁହଁରେ ଖୋଲାଖୋଲି ବିଦ୍ରୂପ ଥିଲା, ତେଣୁ ଜାହ୍ନବୀ ସାଙ୍ଗେ ସାଙ୍ଗେ କହିଲା, ''ହେଲେ, କେତେ ବା ମିଳିବରେ ବାପା ? ତୋ ନାଆଁରେ ତୋ ବାପା ଯେତିକି ରଖିଯାଇଚନ୍ତି, ତା'ର କାଣିଚାଏ ଭଲା ମୁଁ କମେଇ ପାରିବି ? ତଥାପି ଦେଖାଯାଉ । ଲେଖୁଚି ତ ।''

ବାବୁଲୁ ଏଥର ରାୟ ଦେଲା, ଉତ୍ସାହିତ କରିବା ସ୍ୱରରେ—''ଲେଖ । କିଛି ଗୋଟେ ପୁରସ୍କାର ବି ମିଳିଯାଇପାରେ ।''

ଉତ୍ସାହିତ ହେଲାଭଳି ଜାହ୍ନବୀ କହିଲା, ''କେଜାଣି । ଏମିତିକି ଟିଭି କି ସିନେମା ବି ବନିଯାଇପାରେ ।'' ବାବୁଲୁ ଆଖିରେ ଟିଭିର ଦୁନିଆ ସବୁଠାରୁ ବଳି ଆକର୍ଷଣୀୟ, ଗରିମାମୟ । ପ୍ରଭାବିତ ହେବା ଉଚିତ କି ନୁହେଁ, ବାବୁଲୁ ସ୍ଥିର କରିବା ପୂର୍ବରୁ, ଜାହ୍ନବୀ ଆହୁରି କହିଲା, ''ତୋତେ ମୁଁ ପଢ଼େଇବି; ବୁଝିଲୁ ? ତୁ କହିବୁ, ଭଲ ହେଇଚି କି ନାହିଁ ।''

ଜାହ୍ନବୀ ହୃଦୟଙ୍ଗମ କଲା, ପଢ଼ିବାକୁ ଦେଲେ ହୁଏତ ବାବୁଲୁ ତାଙ୍କ ପିଛା ଛାଡ଼ିଦେବ । ଯଦି ସେ ପ୍ରତିଦିନ ବାବୁଲୁକୁ ଡାକି 'ପାଞ୍ଚପୃଷ୍ଠା ଶୁଣ୍' ବୋଲି କହେ, ସେ ଟାଳିବା ସୁନିଶ୍ଚିତ । ଅତି ସ୍ନେହାର୍ଦ୍ର ସ୍ୱରରେ ଜାହ୍ନବୀ ତାକୁ ଡାକି କହିବ, ''ବାପ ବାବୁଲୁ, ସେ ଅଙ୍କଗୁଡ଼ା କଷ୍‌ନା ଆଉ । ଅଙ୍କ କଷାରୁ ପାଇବୁ କ'ଣ ? ଆ ମୋ ଡାଏରି ଶୁଣ ।'' ଏଥିରେ ଡାଏରି ତା'ର ଗୁପ୍ତ ରହିଯିବ ।

ଗପ ବୋଲି ନ କହିଲେ କିଏ ବା କାହିଁକି ବିଶ୍ୱାସ କରିବ ଯେ ଏଇ ବୟସରେ, ଏଇ ଚେହେରାରେ, ତା'ର ଗୋଟେ ପ୍ରେମ ଉପାଖ୍ୟାନ ଚାଲିଚି ? ତା' ବି ବମ୍ୱେର ସିନେମା ଟିଭି ଜଗତର ଜଣେ ଜଣାଶୁଣା ଲେଖକଙ୍କ ସହିତ । ଏମିତିକି ଗପରେ ବି ଲୋକେ ବିଶ୍ୱାସ କରିବେନି, ତାକୁ କଟାଛଟା କରିବାକୁ ହେବ । ଲେଖକ, କୁମାର ମେଘଦୂତ ନାଆଁରେ ସେ ଲେଖନ୍ତି—ତା ଗପର କିଛି ଅଂଶ ଶୁଣି ହସି ପକେଇଥିଲେ, କହିଲେ—'ଏତେଗୁଡ଼ାଏ ନାଟକୀୟ କଥା ସିନେମାରେ ବି ଶୋଭା ପାଏନି । ତା' ଛଡ଼ା ପ୍ରେମଗଳ୍ପରେ ତ ନାୟିକା ତରୁଣୀ ଓ ସୁନ୍ଦରୀ ହେବା ଅନିବାର୍ଯ୍ୟ । ତମ ନାୟିକା ଚାଳିଶୋଉରା, ପୁଣି ତାର ଢେଉଢେଉକା ବବୁରି ବାଳରେ କିଛି କିଛି ରୂପାତାର ଗୁନ୍ଥା ହେଇଚି ବୋଲି ତମେ କହୁଚ । ଲେଖକକୁ ପାଠକଦର୍ଶକର ମନସ୍ତତ୍ତ୍ୱ ବୁଝିବାକୁ ହୁଏ ।''

ଜାହ୍ନବୀ କିଛି ଉତ୍ତର ଦେଇନଥିଲା, ଯଦିଓ ଗୋଟିଏ ଦିଇଟା ବିଶ୍ୱବିଖ୍ୟାତ ଉପନ୍ୟାସରୁ ସେ ଉଦାହରଣ ଦେଇପାରିଥାନ୍ତା । ଲେଖକଙ୍କୁ ଦୋଷ ଦେଇ ବା ଲାଭ କଣ ? କୋଉଥିରେ କେତେବେଳେ ନାଟକୀୟତା ବେଶୀ ରହିବ, ଜୀବନରେ ନା ସାହିତ୍ୟରେ, ତା ପୁଣି ସ୍ୱୀକାର୍ଯ୍ୟ ନାଟକୀୟତା, ତା'ର କ'ଣ କିଛି ନିୟମ ଥାଏ ? ବାବୁଲୁ ଯେତେବେଳେ ପ୍ରଥମେ ଆସି ତା ପାଖେ ରହିଲା, ପିଲାଟିର ପରିବାରର ବିପର୍ଯ୍ୟୟକୁ ନେଇ ସେ ଗୋଟିଏ ଗପ ଆରମ୍ଭ କରିଥିଲା । କିନ୍ତୁ ଧୀରେ ଧୀରେ ବାବୁଲୁ ସହିତ ଜାହ୍ନବୀ ତଥା ତା ମାଆଙ୍କ ସଂପର୍କ ଏମିତି ରୂପ ନେଇବସିଲା ଯେ ଗପଟିକୁ ପୂରା କରିବା ତା ପାଖେ ଅସମ୍ଭବ ହେଇପଡ଼ିଲା, ଯଦିଓ ସମ୍ପୂର୍ଣ୍ଣ ଘଟଣାଟିର ସତ୍ୟତା ଅପେକ୍ଷା ସମ୍ଭାବିତ ଔପନ୍ୟାସିକ ଦିଗଟି ତାକୁ ଆକ୍ରାନ୍ତ କରି ରଖିଥିଲା କିଛିଦିନ । ଏକୁଟିଆ ଆସନ୍ନପ୍ରୌଢ଼ା ନାରୀଟିଏର ଘଟଣାହୀନ ଜୀବନରେ ପ୍ରବେଶ କରେ ଅସହାୟ

କିଶୋରଟିଏ, ଯିଏ ସ୍ୱଚ୍ଛନ୍ଦ, ନିରାପଦ ବାଲ୍ୟାବସ୍ଥା ପାରି ନହେଉଣୁ ଅଚାନକ ସ୍ଥାଣୁ ପାଲଟିଯାଇଚି ଭାଗ୍ୟର ବଜ୍ରପାତରେ। ବନ୍ଧୁ ପରିଜନ ସମସ୍ତେ ପିଲାଟିର ବାପା ଛାଡ଼ିଥିବା ସମ୍ପତ୍ତି ଲାଗି ଚକ୍ରାନ୍ତ କରୁଚନ୍ତି। ଅନଭିଜ୍ଞା ନାରୀଟି ଅନନ୍ୟୋପାୟ ହୋଇ ପଶିଯାଉଚି ଚକ୍ରବ୍ୟୂହ ଭିତରକୁ। ତେବେ, ତାଙ୍କ ଗପର ବାଳକଟି ଯେତେ ଯେତେ ଅସହାୟ ଦିଶି ପାଠକର ମନ ମୋହିବାକୁ ଚେଷ୍ଟାକଲା, ବାବୁଲୁ ଦିନକୁଦିନ ସେତେ ଉଦ୍ଧତ, ଦୁର୍ଦ୍ଧାନ୍ତ ହେଇଚାଲିଲା। ଏମିତିକି ତା ମୁହଁଟି ବି ବ୍ରଣରେ କ୍ରମେ ଛାଇ ହେଇ ଚାଲିଲା ଓ ଜାହ୍ନବୀକୁ ସହିବାର ସୀମାଯାଏଁ ଟାଣିନେଇ ମୁହଁରେ ବିଡ଼ିଗନ୍ଧ ନେଇ କଥାବାର୍ତ୍ତା କଲା। ଅଚିରେ ବନ୍ଧୁବାନ୍ଧବଙ୍କ ସହିତ ବାବୁଲୁ ବି ଆକ୍ଷେପ କଲା ଯେ ତା ସମ୍ପତ୍ତି ଉପରେ ଜାହ୍ନବୀର ହିଁ ସବୁଠୁ ବେଶୀ ଦୃଷ୍ଟି ଅଛି। ନାଆଁ ବଦଳାଇଥିଲେ ବି ଲେଖାର ଚରିତ୍ରଟିକୁ ସେ ନିଜେ ବୋଲି ବାବୁଲୁ ଚିହ୍ନି ପାରିଲା ଓ ତାକୁ ଚ୍ୟାଲେଞ୍ଜ କଲା ଯେ ସେ ମିଛ ଲେଖୁଚି ନିଜ ଡାଏରିରେ।

ପାଖ କୋଠରିର ବିଛଣାରୁ ଏତେବେଳେ ଆକୁଳ ଝାଇଁ ଝାଇଁ ସ୍ୱର ଶୁଭିଲା, ''ଏ ଟୋକାକୁ ମୁଁ ଆଉ ପାରିବିନି। ମୋ ପ୍ରାଣ ଖାଇଗଲା ଲୋ ଜାନି।'' ବାବୁଲୁ ତା ବୁଢ଼ୀ ଆଈକୁ କିଛି ଗୋଟାଏ ହଇରାଣ କରିବା ଆରମ୍ଭ କରିଦେଇଥିଲା। ଜାହ୍ନବୀ ଲେଖିବାକୁ ଖାତା ଖୋଲିଥିଲା, ସେଠୁ ସ୍ଥିରକଲା ଆଗ ଫୋନ୍ କରିବ କବିତା ସେନ୍‌ଙ୍କୁ, ତା ସ୍ୱାମୀ ବାବୁଲୁ ଲାଗି ଭଲ କୋଉ ବୋର୍ଡିଂ ସ୍କୁଲ୍‌ରେ ସିଟ୍‌ଟାଏ ଠିକ୍ କରିଦେବେ ବୋଲି କହିଥିଲେ।

ସଂସ୍କୃତ ବିଭାଗର ଏକମାତ୍ର ଅଧ୍ୟାପିକା ବୋଲି ଜାହ୍ନବୀ ଅନେକ ସମୟରେ ଯାଇ ଇଂରାଜୀ ବିଭାଗର କବିତା ସେନ୍‌ଙ୍କ ପାଖେ ବସେ। ଏକମାତ୍ର କବିତା ସାଙ୍ଗେ ହିଁ ସେ ବ୍ୟକ୍ତିଗତ ଗପସପ କିଛି କରିପାରେ। ସେଇ ଗୋଟିଏ କଲେଜରେ ଅଠର ବର୍ଷ ହେଲା ଥିଲା ସେ ଓ କଲେଜର ଷ୍ଟାଫ୍ ସଂଖ୍ୟା ଏ ଭିତରେ ପନ୍ଦରକୁ ବଢ଼ି ଦେଢ଼ଶହରେ ପହଞ୍ଚିଥିଲା। ଏଣେ ଜାହ୍ନବୀର ବନ୍ଧୁ ସଂଖ୍ୟା କମି କମି ଏବେ ଏଇ ଗୋଟିକକୁ ଆସିଯାଇଥିଲା ପ୍ରାୟ। ଅନ୍ୟ ସହକର୍ମୀ ବା ପଡ଼ୋଶୀଙ୍କ ବିରୁଦ୍ଧରେ ତା'ର ଖାସ୍ କିଛି ଆପତ୍ତି ଅଭିଯୋଗ ଥିଲା, ତା ନୁହେଁ। ଚିହ୍ନା ପରିଚୟ ସମସ୍ତଙ୍କ ସାଙ୍ଗେ। ହେଲେ, ଗପସପ ବିଶେଷ ଆଗକୁ ବଢ଼େନାହିଁ, କୋଉଠି। କର୍ତ୍ତବ୍ୟ ଭାବେ ସେ ସମୟ ସୁଯୋଗ ଦେଖି, ବିଭିନ୍ନ ଦଳର ଗପସପ ଆସରରେ ମଝିରେ ମଝିରେ ଯୋଗ ଦିଏ। ଥରେ ଜଣ୍ଡିସ୍ ହେଇ ସେ ମାସେ ଛୁଟିରେ ରହିଲା। ତା'ପରେ କଲେଜ ଗଲାବେଳକୁ କେବଳ କବିତା ପଚାରିଲା ତା ଦେହପା' କଥା, ଅନ୍ୟ କେହି ତା ଅନୁପସ୍ଥିତି ଲକ୍ଷ୍ୟ ବି କରିନଥିଲେ। ପାଞ୍ଚଜଣ ସ୍ତ୍ରୀଲୋକ ଏକାଠି ହେଲାକ୍ଷଣି ପିଲାଛୁଆଙ୍କ ସ୍କୁଲ୍ ପରୀକ୍ଷା,

ଦୁଷ୍ଟାମି କଥା ପଡ଼େ, ସ୍ୱାମୀଙ୍କ ପସନ୍ଦ ନାପସନ୍ଦ, ତରକାରିପତ୍ର କଥା ଚର୍ଚ୍ଚା ହୁଏ, ଅମୁକର ସମୁକ ସାଙ୍ଗେ ଚାଲିଥିବା ଭିତିରି କାରବାରରେ ହସାହସି ହୁଏ । ଏଭଳି ଆସର ଲାଗି ଊଣାଅଧିକେ ସଭିଙ୍କର ସାଧାରଣ ପୃଷ୍ଠଭୂମିଟିଏ ଦରକାର ପଡ଼େ ।

ଆଉ ଗୋଟିଏ ଅଡୁଆ । ଝିଅଦିନରେ ବି ଗପସପ ଆରମ୍ଭ କଲାମାତ୍ରେ ଜାହ୍ନବୀ ପଢ଼ିଥିବା ଗଳ୍ପ ଉପନ୍ୟାସରୁ ଉଦାହରଣ ଦେବାକୁ ଆରମ୍ଭ କରେ । ସେ ବହିମାନ ପ୍ରାୟ ଅନ୍ୟମାନେ ପଢ଼ିନଥାନ୍ତି । କେତେକାଂଶରେ ଜାହ୍ନବୀକୁ ସେଥିରେ ସୁବିଧା ହୁଏ, ନିଜ କଥାକୁ ରୋଚକ କରିବା ପାଇଁ । ଅନ୍ତତଃ ଝିଅ ଦିନେ ହେଉଥିଲା । କ୍ରମେ ସେଇ ଅଭ୍ୟାସ ତାକୁ ଅଡୁଆ ହେଲା । ଥରେ ତାକୁ ଜଣେ ପ୍ରିୟ ସାଙ୍ଗ କହିଲା, ‘‘ତୁ ମନରୁ ଫାନ୍ଦି ଏତେକଥା ନ କହିଲେ ଚଳନ୍ତାନି ? ଅନ୍ୟ ସମସ୍ତେ କ’ଣ ବୋକା ହେଇଚନ୍ତି, ମିଛ ବୋଲି ବୁଝିପାରୁନାହାନ୍ତି ?’’

ଥ’ ହେଇଗଲା ଜାହ୍ନବୀ । ‘‘ମୁଁ ମିଛ କହୁଚି ? ଏଡ଼େ ବିଖ୍ୟାତ ଔପନ୍ୟାସିକ ମିଛ କହିଚନ୍ତି ତାଙ୍କ ବହିରେ ? ସେଥିରୁ କଥାଟିଏ କହିଲେ ମିଛ, ଅନ୍ୟମାନେ ନିଜ ବିଷୟରେ, ଯା ତା ନାଆଁରେ ବନେଇ ଚୁନେଇ ଯାହାସବୁ କହୁଚନ୍ତି, ତା ସତ ?’’

ସାଙ୍ଗ ଧୈର୍ଯ୍ୟର ସହିତ ବୁଝାଇଥିଲା, ‘‘ଦେଖ୍ । କଥା ପଡ଼ିଥିଲା ରୀନା ଗୁପ୍ତା ବୋଲି ଥାର୍ଡ୍ ଇଅର୍‌ର ଝିଅଟା, ଯିଏ ଅତିଗୁଡ଼େ ସଜବେଶ ହେଇ ଆସେ, ସିଏ କଲ୍‌ଗାର୍ଲର ପେଷା କରୁଚି, ତା ମା’ ବି ଏକଥା ଜାଣେ, ଏପରିକି ନିଜେ ତା ଝିଅକୁ ସେ କାମରେ ଲଗେଇଥାଇ ପାରେ । ତୁ ସେଠୁ କହିଲୁ—ଆଶ୍ଚର୍ଯ୍ୟ କ’ଣ । ସେ ଅମୁକେଇ ଝିଅ...’’

‘‘ଅମୁକେଇ ନୁହେଁ । ମୁଁ କହିଲି ସୋନିଆ । କହିଲି ସୋନିଆ ପରା ତା ଘର ସାରାକୁ ଏତେଦିନ କାଳ ନିଛକ୍ ବେଶ୍ୟାଗିରି କରି ପୋଷୁଥିଲା । ତା ନିଜ ବାପକୁ ଦେଖ, ହୋଟେଲ୍‌ରେ ବସି ମଦ ପିଇ, ବିଚ୍ ବଜାରରେ ସେକଥା ବଖାଣିଗଲା, କ’ଣ ନା ଦେଖ ମୁଁ କେଡ଼େ ଦୁଃଖୀ, ମୋତେ ସମବେଦନା ଦେଖାଅ ।’’

ସାଙ୍ଗ ତାକୁ ମଝିରୁ କାଟି କହିଲା, ‘‘ଏଥିରେ ଯିଏ ହେଲେ ଭାବିବ ନା ନାହିଁ ଯେ ସୋନିଆ ତୋ ଚିହ୍ନାଜଣା କିଏ ବୋଲି ?’’

ଜାହ୍ନବୀ କହିଲା, ‘‘ଆଉ ନୁହେଁ ତ କଣ ? ସୋନିଆ ଆମ ଚିହ୍ନାଜଣା ଭିତରେ ବି କେହି ହେଇପାରିଥାନ୍ତା । ସେ ଦସ୍ତଭସ୍କିଙ୍କ ଉପନ୍ୟାସର ନାୟିକା ବୋଲି ଏମାନଙ୍କ ଆଗରେ କହିବା କି ଦରକାର ?’’

ସାଙ୍ଗ ଏଥର ହାଲ୍ ଛାଡ଼ିଦେଇ କହିଲା, ‘‘କହ, ଯେମିତି ଯାହା ତୋ ମନ । ତୁ ଯାହା କହିଲେ ବି ସେଥିଲାଗି କେହି ଆଉ ବିଶ୍ୱାସ କରୁନାହାନ୍ତି ।’’

ଜାହ୍ନବୀକୁ ବାଧିଥିଲା କଥାଟା । ଏତେ ଅତିରଞ୍ଜନ, ଫୁଲେଇପଣ, ଗୋଳିଆଗୋଳି କଥା ଥାଏ ସେଇମାନଙ୍କ କଥାରେ ଯେ ଶତକଡ଼ା ପଚାଶ ବି ସତ ନଥାଏ । ତା କଥାର ସତ ମିଛ ଏଇମାନେ ବିଚାର କରିବେ । ଶେଷକୁ ଏମିତି ଅବସ୍ଥା ଆସି ପହଞ୍ଚିଛି ଯେ ଜାହ୍ନବୀର ଭଉଣୀ ଓ ଭ୍ରାଇଁ ଯେତେବେଳେ ଦୁର୍ଘଟଣାରେ ମରିଥିଲେ, ପିକ୍‌ନିକ୍‌ରେ ଯାଉଥିବାବେଳେ, ଜଳପ୍ରପାତ ଆଡ଼କୁ ଯାଇଥିବା ତିଖ ରାସ୍ତାରୁ ଗାଡ଼ି ଓଲଟି ପଡ଼ିଥିଲା ଖାଇ ଭିତରକୁ, କେବଳ ବାରବର୍ଷର ବାଳକଟି ଆଶ୍ଚର୍ଯ୍ୟଜନକ ଭାବେ ବଞ୍ଚିଯାଇ ତା ମାଉସୀ ଜାହ୍ନବୀ ପାଖରେ ଆସି ରହିଲା, କଲେଜରେ ଷ୍ଟାଫ୍ କହିଲେ, କେଉଁ ନୋବେଲ୍ ପ୍ରାଇଜ୍‌ବାଲା ଉପନ୍ୟାସର କଥା ହେଇଥିବ ମ, ତା କଥାକୁ କାହିଁ ଶୁଣୁଛ; ଯଦିଓ ଜାହ୍ନବୀ ନିଜ ମୁହଁରେ କାହାକୁ ପଦେ କିଛି କହିନଥିଲା । ଖବରକାଗଜରେ ବାହାରିଥିଲା ସେକଥା ।

କବିତା ସେନ୍ ଫୋନ୍‌ରେ ତାକୁ ଆଶ୍ୱାସନା ଦେଲା ଯେ ବାବୁଲୁର ସିଟ୍ କଥା ତା ସ୍ୱାମୀ ବୁଝୁଚନ୍ତି ବୋଲି । ତାପରେ ପନ୍ଦର ମିନିଟ୍ କାଳ ବର୍ଣ୍ଣନାକଲା ସେ ସଦ୍ୟ ପଢ଼ିଥିବା ଉପନ୍ୟାସଟିର କାହାଣୀ । କବିତା ଆରେକ ଭକ୍ତ ପାଠକ, ଗପବହିଟିଏ ପାଇଲେ ଦୁନିଆ ଭୁଲିଯିବ ଓ କେବଳ ଜାହ୍ନବୀ ସହିତ ସେ ବହି ଦିଆନିଆ କରିପାରେ, ସେ ନେଇ ଚର୍ଚ୍ଚା କରିପାରେ । ତା'ଛଡ଼ା ତା ସ୍ୱାମୀର ଆଗ୍ରହ ନଥିବାରୁ ଜାହ୍ନବୀ ସାଙ୍ଗରେ ସେ କେବେ କେମିତି ପସନ୍ଦମୁତାବକ ସିନେମା କି ନାଟକ ଦେଖିବାକୁ ଯାଇପାରେ । କଲେଜରେ କଲିଗ୍‌ମାନଙ୍କ ଆଗରେ ଗପସପର ବିଷୟବସ୍ତୁକୁ ବହିପତ୍ର ନାଟକ ଆଦିରୁ ଦୂରରେ ରଖେ ଓ ପାରିବାରିକ ବନ୍ଧୁ ମହଲରେ ତା ଗପସପ ଆଉ ପ୍ରକାରେ । ତା ଘରକୁ ଜାହ୍ନବୀ ଯାଇଛି । ସୁନ୍ଦର ସଜଡ଼ା ଡ୍ରଇଂରୁମ୍‌ରେ କବିତା ହାତର ଛୁଞ୍ଚିକାମକରା କୁଶନ୍ ପଡ଼ିଥାଏ ଓ ତା ସ୍ୱାମୀ, ପିଲାମାନେ ତାଆରି ହାତତିଆରି ସ୍ୱେଟର୍ ପିନ୍ଧନ୍ତି, ଯାହା ଏତେ ସୁନ୍ଦର ଯେ ସହରଯାକରେ ବାରିହେଇ ପଡ଼େ କାଳେ ।

କବିତା ପଚାରିଲା ଫୋନ୍‌ରେ, ''ତୁ ଶୁଣୁଛୁ କି ନାହିଁ ମୋ କଥା ? ଏବେ କେତେଦିନ ହେଲା ଭଲରେ ଗପ ବି କରୁନୁ । କିଛି ନୂଆ ସମସ୍ୟା ହେଲା କି ଘରେ ?''

ଦୋଦୋପାଞ୍ଚ ହେଇ ଜାହ୍ନବୀ କହିଲା, ''ହଁ ଅଛି ଗୋଟାଏ ପ୍ରୋବ୍ଲେମ୍ । ତୋତେ କହିନି ଏଯାଏଁ । ଘରକଥା ନୁହେଁ । ଅଲଗା ।''

ଲେଖକଙ୍କ ଘଟଣା ସେ କହିନି କବିତାକୁ । ନକହିବ ବୋଲି ସ୍ଥିର କରିଛି । ଅଥଚ ଏତିକି କହିପକାଇଲା । କବିତା ଟିକିଏ ଉତ୍ସୁକ ହେଲା ।

''କ'ଣ ହେଲା ? ଦେହପା' ନେଇ କିଛି ଅସୁବିଧା ?''

''ନା, ତା ନୁହେଁ ଠିକ୍। କାଲି କହିବି।''

ଆଶ୍ୱାସନାରେ ସର୍ବଦା ବୋଳିହେଲା ସ୍ୱରରେ କବିତା କହିଲା, ''ଜମା ବ୍ୟସ୍ତ ହେବୁନି। ମୁଁ ତତେ ମୋ ଚିହ୍ନା ଡାକ୍ତରଙ୍କ ପାଖକୁ ନେଇଯିବି। ଏ ବୟସରେ ସେ ଧରଣର ସମସ୍ୟା କିଛି ହେବ ନିଶ୍ଚୟ।''

ଫୋନ୍ ରଖିଲା ପରେ ଜାହ୍ନବୀ ଭାବିଲା, ଯାଃ ଭଲହେଲା। ଗୁଡ଼ାଏ କଥା ଜମିଯାଇ ମନଟା ଅବଶ୍ୟ ଅତିଷ୍ଠ କଲାଣି ସୀମାଯାଏଁ ଫୁଲିଲା ବେଲୁନ୍ ଭଳି, କାହାକୁ ଟିକିଏ କହିଦେଇପାରିଲେ କେଡ଼େ ହାଲୁକା ଲାଗନ୍ତା ! ତେବେ କାହାକୁ ହେଲେ କହିବା ସମ୍ଭବ ନୁହେଁ ଆଉ, ଡାଏରି ଛଡ଼ା।

କବିତାକୁ ସେ କହିଥିଲା ପ୍ରଥମ ଦିନ, ଲେଖକ ମେଘଦୂତଙ୍କ ସାଙ୍ଗେ ପରିଚୟ ହେବାକଥା। ପ୍ରକୃତରେ ସେ କବିତାକୁ ନିଜେ ଡାକିଥିଲା। ସାହିତ୍ୟ ଓ ସିନେମା ଉପରେ କଳା-ଭବନରେ ହେଉଥିବା ସେମିନାର୍‌କୁ ଏକାଠି ଯିବା ପାଇଁ। କବିତା ମନା କଲାରୁ ଟିକିଏ ରାଗିଥିଲା ବି, କାହିଁକିନା ତା ନିଜ ସ୍କୁଟରଟା ସେଦିନ ଖରାପ ଥିଲା ଓ କବିତାର କାର୍ ଅଛି। ରିକ୍‌ସା ଅଟୋ କରି ଗଲେ ଅସୁବିଧା, ଫେରିଲା ବେଳକୁ ସଞ୍ଜ ହେଇଯାଇଥିବ। ଆଉ କଲେଜର ଅନ୍ୟମାନେ ସାହିତ୍ୟ-ଅଧ୍ୟାପିକାମାନେ ସେମିନାର୍ କଥା ଖବରକାଗଜରୁ ପଢ଼ି ଚର୍ଚ୍ଚା କରିପାରନ୍ତି, ଡାକିଲେ ଯିବେନି।

ଡେଙ୍ଗା ଦେହ ସିଧା ପିଠି କରି ଦମ୍ଭିଲା ଢଙ୍ଗରେ ସ୍କୁଟର ଚଳାଇ କୋଉ ସେମିନାର୍ କି ନାଟକ ଦେଖିବାକୁ ମାଡ଼ିଯିବାଟାକୁ ବି କଲେଜରେ କେତେକ ସହକର୍ମୀ ଜାହ୍ନବୀର ନିଆରା ବୋଲି ଦେଖେଇ ହେବାର ଆଉ ଗୋଟିଏ ବାଗ ବୋଲି ଭାବନ୍ତି। ଅଧିକାଂଶଙ୍କୁ ମିଳିଥିବା ସୌଭାଗ୍ୟ ନପାଇ ଥିବାରୁ ନିଜକୁ କୌଣସିମତେ ନ୍ୟୂନତର ନୁହେଁ ବୋଲି ପ୍ରମାଣ କରିବାକୁ ଇଏ ସବୁ ତା'ର ପେଖନା ବୋଲି କହନ୍ତି। ଜଣେ-ଅଧେ କହନ୍ତି ଯେ ଫେଶନ୍‌ଟା ଠିକ୍ ହେବ, କିନ୍ତୁ ଟନ୍ତଲୁଗାରେ, ମୁଣ୍ଡରେ କଳାରଙ୍ଗ ଲାଗିବନି କିନ୍ତୁ ବାଳକଟା ହେଇଥିବ ପାର୍ଲର୍‌ରେ, ଏସବୁ ବଡ଼ ସହରର ବୁଦ୍ଧିଜୀବୀ ନାରୀଙ୍କ ଦେଖାଶିଖା ଢଙ୍ଗ। ଜାହ୍ନବୀର ସାନଭଉଣୀ ସାଙ୍ଗେ ପଢୁଥିଲା ସୁପ୍ରୀତି, ତାର କହିବା କଥା ଯେ ଜାହ୍ନବୀର ପିଲାଦିନୁ ଏଇ ନିଆରା ଦେଖେଇ ହେବା ଢଙ୍ଗ ଥିଲା, ସେଇଥିଲାଗି ସେ ତା ବାପା କହିଥିବା ସବୁ ପାଠ ଛାଡ଼ି ସଂସ୍କୃତ ପଢ଼ିଲା ଓ ବାପା ବାଛିଥିବା ସବୁ ବରପାତ୍ରଙ୍କର ଖୁଣ ବାଛି ବାଛି ବାହା ନହେଇ ରହିଲା।

ସେଦିନ ଅଟୋରିକ୍ସା ନେଇ ଜାହ୍ନବୀ ସେମିନାର୍ ଆରମ୍ଭ ହେବାର ଅଧଘଣ୍ଟା ଆଗରୁ ପହଞ୍ଚି ଯାଇଥିଲା, କାରଣ ପ୍ରଥମ ବକ୍ତା ହିଁ ଥିଲେ ମେଘଦୂତ। କିଏ ଜାଣିଥିଲା, ମେଘଦୂତ ନିଜେ ଭାଷଣ ସାରି ମଞ୍ଚରୁ ଓହ୍ଲେଇ ଆସି, ସିଧା ତୃତୀୟ ଧାଡ଼ିକୁ ଆସି

ବସିପଡ଼ିବେ ତାଆରି ପାଖ ଖାଲି ସିଟ୍‌ରେ ବୋଲି । ଜାହ୍ନବୀକୁ ଲାଗିଲା ସେ ନିଶ୍ଚୟ ତା ମୁହଁରୁ କିଛି ପଢ଼ିପାରିଛନ୍ତି, ନା ସମସ୍ତଙ୍କୁ ହିଁ ସେ ସେମିତି ଅନାନ୍ତି ? ଆଶ୍ଚର୍ଯ୍ୟରେ ତାଙ୍କ ମୁହଁକୁ ସିଧା ଅନେଇ ଥିବାବେଳେ ସେ ପଚାରିଲେ, 'କେମିତି ଲାଗିଲା ମୋ ବକ୍ତବ୍ୟ ?'

ଜାହ୍ନବୀ ପ୍ରସ୍ତୁତ ଥିଲାଭଳି ସିଧା ପଚାରିଲା, ''ଆପଣଙ୍କର କଣ ନିଜ ପ୍ରଥମ ବହି ବିଷୟରେ କିଛି କହିବାକୁ ନାହିଁ ? ସିନେମାରେ ବ୍ୟବହୃତ ଲେଖାତକକୁ ହିଁ ଆପଣ ସାହିତ୍ୟ ପର୍ଯ୍ୟାୟରେ ନେଉଛନ୍ତି ?''

ଭଦ୍ରଲୋକ ହଠାତ୍ କିଛି ଉତ୍ତର ଦେଇପାରିଲେ ନାହିଁ । ଅନ୍ୟ ବକ୍ତା ମାଇକ୍ ପାଖକୁ ଆସିଯାଇଥିଲେ, ସେଇ ଆଳରେ ତା ପ୍ରଶ୍ନକୁ ଟାଳିଗଲେ, ''ପରେ ସେ ବିଷୟରେ କଥା ହେବା । ୟାଙ୍କୁ ଶୁଣାଯାଉ ଆଗ ।''

ଜାହ୍ନବୀ ଛାଡ଼ିଲାନି, କହିଲା, ''ପ୍ରଶ୍ନୋତ୍ତର ସମୟରେ ମୁଁ ହାତ ଟେକିଥିଲି, ମୋତେ ପଚାରିବାକୁ ସୁଯୋଗ ମିଳିଲାନି । କେବଳ ଆପଣଙ୍କୁ ଶୁଣିବାକୁ ମୁଁ ଆସିଥିଲି । ଆଉ ମୋ ବିଚାରରେ, ପଚିଶ ବର୍ଷ ତଳର ସେ ଉପନ୍ୟାସଟି ପରେ ଆଉ କିଛି ଆପଣ ଲେଖିନାହାନ୍ତି ।''

ଆଗ ଧାଡ଼ିମାନଙ୍କରୁ ଜଣେଅଧେ ଫେରିଚାହିଁଲେ ବିରକ୍ତିରେ, ତେଣେ ଭାଷଣ ଆରମ୍ଭ ହେଇଯାଇଥିଲା । ଲେଖକ ଗମ୍ଭୀର ଦିଶିଲେ, ହସ ମିଳେଇଯିବା ପରେ ତାଙ୍କ ସୁଦର୍ଶନ ମୁହଁରେ ଗାରମାନ ସ୍ପଷ୍ଟ ଦିଶିଲା । ସେ ପ୍ରାୟ ଦୁଃଖୀ ଦେଖାଗଲେ । ତା ଆଡ଼େ ନ ଅନେଇ କହିଲେ, ''ହଉ, ପରେ କଥା ହେବା ।''

ତେବେ, ପରବର୍ତ୍ତୀ ଭାଷଣମାନ ଚାଲିଥିବା ଭିତରେ ହିଁ ସେ ତା'ର ବିଶଦ୍ ପରିଚୟ ପଚାରିଲେ ଓ ଦିପହର ଖିଆପିଆ ଚାଲିଥିବା ବେଳେ ତା'ର ମତାମତର କାରଣ ଜାଣିବାକୁ ଚାହିଁଲେ । କହିଲେ, ''ମୋର ମନେହେଉଚି ଆପଣ ସେଇ ଗୋଷ୍ଠୀର ପାଠକ, ଯେଉଁମାନେ ଭାବନ୍ତି, ସାହିତ୍ୟରୁ ଅର୍ଥୋପାର୍ଜନ କରିବା ହିଁ ପାପ ।''

ଜାହ୍ନବୀ କହିଲା, ''ପଇସା କଥା ଛାଡ଼ନ୍ତୁ । ଆପଣ ନିଜେ କଣ ଭାବୁଚନ୍ତି ଆପଣଙ୍କ ପ୍ରଥମ ଉପନ୍ୟାସ ବିଷୟରେ ? ପୁଣି ତା ତୁଳନାରେ ପରବର୍ତ୍ତୀ ଲେଖାତକ ବିଷୟରେ ?''

ଏଥର ବିଷୟଟିକୁ ହସରେ ଟାଳିଦେଇ ଲେଖକ କହିଲେ, ''ସବୁକାମ ମଣିଷ କଣ ଏତେ ଭାବିଚିନ୍ତି, ବୁଝିବିଚାରି କରେ ? ନା ତୁଳନା କରି କରି ଲେଖିଲେ ଆହୁରି ଭଲ ଲେଖି ହେଇଯାଏ ?'' ତାପରେ ହଠାତ୍ ତାକୁ ଚମକାଇ ଦେଇ ସେ ପଚାରିଲେ, ''ଆଚ୍ଛା, ଆପଣଙ୍କ ରାଶି କ'ଣ କହନ୍ତୁ ତ ?''

ଜାହ୍ନବୀ ହତ୍‌ବଢ଼େଇ ଗଲା, ତା ରାଶିଟା ତାର ମନେପଡ଼ିଲାନି । ପଚାରିଲା, "କାହିଁକି କହିଲେ ?"

ସେ ମୁହଁକୁ ଅନେଇ ଏକାଗ୍ର ଚିତ୍ତରେ ପଢ଼ିଲା ପରି କହିଲେ, "ମୋର ମନେହେଉଚି, ସାହିତ୍ୟ ଆପଣଙ୍କ ରାଶିରେ ଅଛି, କିନ୍ତୁ ଠିକ୍-ଭୁଲ୍ ସାହିତ୍ୟ ଚିନ୍ତାରେ ପଡ଼ି ଏଯାଏ ଆପଣ କିଛି ଲେଖିପାରି ନାହାନ୍ତି । ବକ୍ତା ହେବାଲାଗି ଯୋଗ ବି ଥିଲା ବୋଧେ, ହେଉ ହେଉ ଅଧ୍ୟାପିକା ହେଇ ରହିଗଲେ ।"

ଜାହ୍ନବୀର ସାହିତ୍ୟ ଚର୍ଚ୍ଚା ପାଣିଫାଟିଗଲା, ହସିପକେଇ ସେ କହିଲା, "ରାଶି ନଜାଣୁଣୁ ଆପଣ ଏତେକଥା କହିଲେଣି, ଜାଣିଲେ କ'ଣ ଅତୀତ ଭବିଷ୍ୟତ ସବୁ ବତେଇ ଦେବେ ?"

ମୁଣ୍ଡ ଟୁଙ୍ଗାରି ସିନେମାରେ ବାବାଜି ରୋଲ୍ କଲା ଭଳିଆ ମୁହଁରେ ସେ କହିଲେ, "ବତେଇ ନପାରେ । କିନ୍ତୁ ସବୁ ମୋତେ ଦିଶୁଚି । ଅତୀତ, ଆଉ ଆସନ୍ତା କେତେ ଦିନର ଭବିଷ୍ୟତ ।"

ସଞ୍ଜ ଆଡ଼ିକି ପାଖାପାଖି ସିଟ୍‌ରେ ବସିଥିଲାବେଳେ ଲେଖକ କହିଲେ—"ବହୁତ ହେଇଗଲା ଭାଷଣ, ଯିବା ଟିକିଏ କଫି ପିଇଦେଇ ଆସିବା ?"

ଭବନ ଗେଟ୍ ପାଖରେ କଫିହାଉସ୍‌ରେ ଦୁହେଁ ବସିଥିଲା ବେଳେ ଜାହ୍ନବୀର ତଥାପି ଚକିତ ଅବସ୍ଥା ଯାଇନଥିଲା । ଏ ସହର ସେତେବଡ଼ ନୁହେଁ ଯେ ପୁରୁଷ, ସ୍ତ୍ରୀ ମନଇଛା ଏକାଠି ବୁଲିପାରିବେ, ଖୁସିଗପ କରିପାରିବେ ଯୋଉଠି ସେଇଠି । ଏପରି ସେମିନାର ବେଳ କଥା ଅବଶ୍ୟ ଅଲଗା । ସେଇଠୁ ଲେଖକ ଡାକିଲେ ତାକୁ, "ଆସ ଲେକ୍ କୂଳ ରାସ୍ତାରେ ବୁଲିଆସିବା ଘେରାଏ ।" ବୁଝୁବୁଝୁ ଜାହ୍ନବୀ ଜାଣିଲା, ଲେଖକ ଆଠ ଦଶଦିନ ହେଲା ସହରକୁ ଆସିଲେଣି, କଳାଭବନ ତରଫରୁ ନିମନ୍ତ୍ରିତ ଅତିଥି ଲେଖକ ଭାବେ ରହିବେ ମୋଟ ତିନିମାସ । "ବଡ଼ କାମଟାଏ ହାତକୁ ନେଇଛି । ବମ୍ବେରେ ନାନା ଝମେଲା, ମନ ଲଗେଇ କାମ କରିବା କଷ୍ଟ । ଭାବିଲି, ଭଲ ମଉକାଟାଏ, କାମଟା ସାରିଦେଇ ହେବ ।" ଜାହ୍ନବୀ ଅନୁମାନ କଲା, ନିଶ୍ଚେ ପୁଣି କୋଉ ସିନେମା ଟିଭି ଲାଗି ସ୍କ୍ରିପ୍ଟ ହେଉଥିବ । ତାଙ୍କ ଲାଗି ଭବନ ତରଫରୁ ଘର ଓ ଗାଡ଼ିର ବ୍ୟବସ୍ଥା ବି ହେଇଥିଲା ।

ଗାଡ଼ିରେ ବଡ଼ ଘେରାଏ ବୁଲିଆସିଲା ପରେ ଜାହ୍ନବୀ କହିଲା, "ମୋତେ ଟିକେ ବସ୍‌ଷ୍ଟପ୍‌ରେ ଓହ୍ଲେଇ ଦିଅନ୍ତୁ, ମୁଁ ଚାଲିଯିବି ।"

ଏଥର ଲେଖକ ଅନୁରୋଧ କଲେ, ''ଆସୁନ, ମୋ ଘରେ କିଛି ବେଳ ବସି ଯିବ । ଅନେକ ଦିନ ପରେ ମୋର ପ୍ରଥମ ଉପନ୍ୟାସର ହିଁ ଜଣେ ପାଠକକୁ ମୁଁ ଭେଟୁଛି ।''

ଜାହ୍ନବୀ ସହଜରେ ମନା କରିପାରିଥାନ୍ତା, କିନ୍ତୁ ଚୁପ୍ ରହିଲା ଦ୍ୱିଧାରେ । ଲେଖକ ଗାଡ଼ିକୁ ନିଜ ଘର ଦିଗରେ ଯିବାକୁ ନିର୍ଦ୍ଦେଶ ଦେଇ କହିଲେ, ''ଚିନ୍ତା କରନି, ମୋ ଗାଡ଼ି ତମକୁ ଛାଡ଼ିଦେଇ ଆସିବ ।'' ତାଙ୍କ ଘର ସାମ୍ନାରେ ପହଞ୍ଚି ଜାହ୍ନବୀ ଭାବିଲା କହିଦେବ, ''ଏ ସହର ଏତେବଡ଼ ନୁହେଁ ଯେ—''ସେତେବେଳେ ସେ ଦେଖିଲା, ଲେଖକ ତା ମୁହଁକୁ ଦେହକୁ ଚଉଲୁଚନ୍ତି, ଓ ହୃଦୟଙ୍ଗମ କଲା, ପୁରୁଷକୁ ଲାଜ କରିବାର ବୟସ ବା ପୁରୁଷ ପକ୍ଷେ ତାକୁ ଘରକୁ ଡାକିବା ଅଭଦ୍ରାମି ବୋଲି ଭାବିବାର ଅବସ୍ଥା ଚାଲିଗଲାଣି ନିଶ୍ଚୟ । ତାଙ୍କ ସାଙ୍ଗେ ଚାଲିଲା ବେଳେ ସେ ପୁଣି ଜାଣୁଥିଲା ଯେ ଲେଖକଙ୍କର ବୟସ ସତ୍ତ୍ୱେ ସୁପୁରୁଷ ଭଳି ଚେହେରା ଅଛି ଓ ମନେପଡ଼ିଲା ଲଞ୍ଚ ବେଳେ କେତେ ଝିଅ ତାଙ୍କ ଆଗ ପଛ ହେଉଥିଲେ, ଅଟୋଗ୍ରାଫ୍ ନେଉଥିଲେ । ନିଶ୍ୱାସଟିଏ ଛାଡ଼ି ସେ ଭାବିଲା, ସହଜରେ ସମ୍ଭବ ହେଇଥିଲେ ଭଦ୍ରଲୋକ କାହିଁକି ଭଲା ସେ ଝିଅମାନଙ୍କ ଭିତରୁ ଜଣକୁ ଡାକିନଥାନ୍ତେ ?

ସେଦିନ ସେ ନିଜ କଥା ହିଁ କହିଲେ ବେଶୀ । କହିଲେ, ''ଜାଣ, ମୋତେ ଲାଗୁଛି ମୁଁ କେମିତି ପଚିଶ ବର୍ଷ ତଳକୁ ଫେରିଯାଇଛି । ମୋର ପ୍ରଥମ ବହି ଲେଖୁଥିବା ଦିନମାନଙ୍କୁ । ତମ ସାଙ୍ଗେ ସେବେ କଟାଇଥିବା ଦିନମାନଙ୍କୁ ।''

ଜାହ୍ନବୀର ମୁଣ୍ଡ ସାଇଁ ସାଇଁ ହେଲା, ଯେମିତି ବେଳେବେଳେ ହୁଏ କଲେଜରେ, ବନ୍ଧୁ ମେଳରେ ବସି କଥା କହୁକହୁ ଖିଅ ତା ହାତରୁ ବାହାରିଯାଇ କୋଉ ନଭେଲ୍‌ରେ ପଶିଯାଏ ଓ ସେ ଦେଖିପାରେ ଅନ୍ୟମାନଙ୍କ ଠାରାଠାରି, ଚାପା ହସ, ତା ମୁଣ୍ଡ ହଠାତ୍ ସାଇଁ ସାଇଁ ହୁଏ, ଆଉ ସେ କୌଣସିମତେ ପୁଣି ଜାବୁଡ଼ିଧରେ ବର୍ତ୍ତମାନର ବିଷୟବସ୍ତୁକୁ । ସେ କହିଲା, ''ଆପଣ ବୋଧେ ମୋତେ ଥଟ୍ଟା କରୁଛନ୍ତି ।'' ଏଭଳି ଭାବିବାରେ ବି ତା'ର ଦୁଃଖ ନଥିଲା । ଦୁଃଖ ସୁଖ କିଛି ନଥିବା ଏକ ଅତିବାସ୍ତବ ଜଗତରେ ସେ ଥିଲା ।

ଲେଖକ ସେଦିନ ତାଙ୍କ ପିଲାଦିନ କଥା, ବାପା ମରିଯିବା ହେତୁ କଲେଜପଢ଼ା ଅଧା ରହିଯିବା କଥା, ପେଟପାଟଣା ପାଇଁ କଷ୍ଟ ପାଇବା କଥା, ପ୍ରଥମ ବିବାହ ବିଚ୍ଛେଦଜନିତ ଅପବାଦ ଆଦି ନାନା କଥା ଗପିଲେ । ଗପିସାରିଲା ପରେ କହିଲେ, ''କାଲିଠୁ ତମେ ଗପିବ, ମୁଁ ଶୁଣିବି । ମୋର ତ ସବୁକଥା ଏକାଦିନକେ ସାରିଦେଲି ।'' ତାପରେ ଉଠି ଚା ଆଣେ ବୋଲି କହି କିଚେନ୍‌କୁ ଗଲେ । ''ଥାଉ ଥାଉ, ଆପଣ ନିଜେ

କାଇଁକି ଚା କରିବେ'' ବୋଲି ଜାହ୍ନବୀ କହିଲା ସିନା, ନିଜେ ରୋଷେଇକୁ ଯିବାକୁ ତାର ସାହସ ହେଲାନି । ଠିଆହେଇ ରହିଲା । ଗ୍ୟାସ୍ ଚୁଲି ପାଖରୁ ଲେଖକ କଣ କହୁଥିଲେ, ଶୁଣିବ ବୋଲି ସେ ପାଖକୁ ଗଲା । ରୋଷେଇ ଘରଟା ଏତେ ଛୋଟ ଯେ ଦି'ଜଣ ଠିଆହେଲେ ଲଗାଲଗି ହେବେ ପ୍ରାୟ । ପାଣିରେ ଚିନି, ଦୁଧ ପକେଇ ସାରି ଲେଖକ ତା ଆଡ଼କୁ ମୁହଁ କଲେ, ସେଇଠୁ ତା ଦି'ବାହୁରେ ହାତ ଦେଇ ନିଜ ଉପରକୁ ଟାଣିନେଲେ ଓ ଚୁମାଦେଲେ । ତାପରେ ଚା ଛାଣି ତାକୁ କପ୍‌ଟିଏ ଦେଲେ ଓ କହିଲେ, ''ଭିତର ରୁମ୍‌କୁ ଯିବା ? ମୋର ବହିପତ୍ର କିଛି ଅଛି, ଏବେ ଲେଖୁଥିବା କାଗଜପତ୍ର ବି ।'' ବିନା ଆପତ୍ତିରେ ଜାହ୍ନବୀ ତାଙ୍କ ପଛେ ପଛେ ଗଲା । ତାଙ୍କ ଲେଖା ଖୋଲା ପଡ଼ିଥିବା ଟେବୁଲ୍ ପାଖେ ଗୋଟିଏ ଚଉକି ଥିଲା, ଜାହ୍ନବୀ ସେଥିରେ ବସିଲା । ଲେଖକ ଡ୍ରେସିଂ ଟେବୁଲ୍ ପାଖରୁ ଷ୍ଟୁଲ୍ ଆଣି ତା ପାଖରେ ବସିଲେ, କହିଲେ, ''ତମକୁ ଦେଖିଲା ବେଳୁ ତମେ ଚିହ୍ନା ଚିହ୍ନା ଲାଗୁଛ । ସେଥିଲାଗି ମୁଁ ସକାଳେ ତମପାଖେ ଆସି ବସିଲି । ତମେ ?''

ଜାହ୍ନବୀ କହିଲା, ''ମୁଁ ତ ଆପଣଙ୍କୁ ବହୁତ ଦିନୁ ଜାଣିଛି, ସେଇ ବହିରୁ ।''

''ବହିରେ କ'ଣ ମୋ ଚେହେରା ଏମିତି ଦିଶୁଥିଲା ?''

ଜାହ୍ନବୀ ହସିଲା, କହିଲା, ''ପଚିଶ ବର୍ଷରେ କ'ଣ ମଣିଷ ବଦଳି ଯାଏନି ?''

''ତମେ କିନ୍ତୁ ସମୟରେ ସ୍ଥିର ରହିଥିଲା ପରି ମଣିଷଟିଏ ।''

''କେମିତି ?''

''ଦୂରରୁ ଗମ୍ଭୀର ବୟସ୍କ ପ୍ରଫେସର ପରି ମୁହଁ, ପାଖରୁ ଦେଖିଲେ ଛୋଟ ପିଲା ପରି ।''

ରାତି ଗହୀର ହେବା ପୂର୍ବରୁ ସେ ଦୁହେଁ ଲେଖକଙ୍କ ବିଛଣାରେ ପହଞ୍ଚି ସାରିଥିଲେ । ତାଙ୍କ କାର୍‌ରୁ ନିଜ ଘରଠି ଓହ୍ଲେଇଲା ପରେ ଜାହ୍ନବୀ ତା ନିତିଦିନିଆ ଲଗାମ୍‌ମାନଙ୍କୁ ଅଣ୍ଡାଳିବାକୁ ଲାଗିଲା, ଯେମିତି ସେ କରେ କେଉଁ ଉପନ୍ୟାସଟିଏରେ ମନ ମୁନ ଚଇତନ ସାଙ୍ଗେ ପଞ୍ଚେନ୍ଦ୍ରିୟଙ୍କୁ ବି ଲଗାଇ ଦେଇଥିଲା ବେଳେ କାନ୍ଥଘଡ଼ି ଡାକଦିଏ ତାକୁ ପୁରୁଣା ଅଭ୍ୟାସର ଡ୍ରାମାରେ, ଆଉ ସେ ଜୋର୍ ଲଗାଇ ଠପ୍‌କିନି ବନ୍ଦ କରିପକାଏ ବହିଟିକୁ । ତାପରେ ମନକୁ ସଫା କରିଦେଇ, ପାଞ୍ଚ ମିନିଟ୍‌ରେ କଲେଜ ପାଇଁ ପ୍ରସ୍ତୁତ ହେଉ ହେଉ ଓ ଦଶମିନିଟ୍ ବାଟ ରାସ୍ତାରେ ଯାଉଯାଉ ସେ କଲେଜର କ୍ଲାସ୍‌ପଢ଼ା ତିଆରି କରେ, ସୁଇଚ୍‌ରେ ହାତମାରି ଟିଭି ପରଦାରୁ ସବୁଯାକ ଚିତ୍ର ଏକାଥରେ ଉଭେଇ ଦେଇ ଅନ୍ୟ ଚ୍ୟାନେଲ୍ ଲଗାଇଲା ଭଳି । ମା ପଚାରିଲା, ''ଏତେ ରାତିଯାଏ କୁଆଡ଼େ ଥିଲୁ ? ରାତି ଦଶଟା ହେଲାଣି ନା କ'ଣ ।''

ମା ମୁହଁକୁ ନିଚେଇକରି ଚାହିଁଲା ସେ, ଧଡ଼ପଡ଼ ଛାତିରେ । ସେଠି ସନ୍ଦେହ ଭଳି ନୀଚ ଜାତୀୟ ଭାବର ଲେଶ ନଥିଲା, କେବଳ ବୁଢ଼ୀ ମା'ଟିଏର ଉଦ୍‌ବିଗ୍ନତା ଯାହା । ଘରେ ପଶି ଚଟି ବଦଳାଇ ସେ ଉତ୍ତର ଦେଲା, ''ଦିନସାରା ସେମିନାର୍ ଚାଲିଥିଲା ପରା । ଜଣେ ବିଖ୍ୟାତ ଲେଖକ ମୋତେ ଆସି ଛାଡ଼ି ଦେଇଗଲେ ।''

ଅଧାଅଧି ସତ କହିପକେଇ ପୁଣିଥରେ ସେ ମା ମୁହଁକୁ ଅନେଇଲା । ତଥାପି ସେଠି ସନ୍ଦେହର ଲେଶ ନଥିଲା, ପଚାରିବା ଦୂରେ ଥାଉ କିଏ ସେ ଲେଖକ, କେତେ ବୟସ, କାହିଁକି ତୋତେ ଏକୁଟିଆ ଆଣି ଗାଡ଼ିରେ ଛାଡ଼ିଲା ।

ଏପରି ଭାବେ ସେ ତିନିଦିନ କାଳ ସେମିନାର୍ ଆଳରେ କଲେଜରୁ ଛୁଟିନେଇ ଲେଖକଙ୍କ ସାଙ୍ଗେ ସମ୍ପୂର୍ଣ୍ଣ ନିମଜ୍ଜିତ ହେଇ କାଟିଦେଲା । ସେମିନାରରେ ଦୁହେଁ ଅଳ୍ପ ସମୟ ଲାଗି ବସୁଥିଲେ । ଅଧିକାଂଶ ସମୟ ଲେଖକଙ୍କ ଘରେ କଟାଉଥିଲେ । ସ୍ୱଳ୍ପ ଆସବାବ ଓ କାମଚଳା ରୋଷେଇ ସରଞ୍ଜାମ ଥିବା ସାନ ଘରଟିସାରା ଜାହ୍ନବୀକୁ ଚିହ୍ନା ଚିହ୍ନା ଲାଗିଥିଲା ପ୍ରଥମରୁ, ଯେପରିକି କୋଉ ଗୋଟିଏ ଉପନ୍ୟାସରେ ସେ ଏଠିକି ଆସିଥିଲା । ଏଭଳି ସବୁ ଆଉଥରେ କୋଉଠି ବି ଘଟିଥିଲା, ଟିକିଏ ଭିନ୍ନ ପ୍ରକାର ।

ଚତୁର୍ଥ ଦିନ କଲେଜ ବାହାରିଲା ବେଳେ ମେଘଦୂତଙ୍କର ଫୋନ୍ ଆସିଲା । ''କେତେବେଳେ ଆସିବ ?'' ପ୍ରଥମ କରି ଜାହ୍ନବୀର ମନେହେଲା, ଅପର ଦୁନିଆଟିକୁ ଖୋଲା ଛାଡ଼ିଦେଇ ସେ ଏଇ ଦୁନିଆଁରେ ଗୋଡ଼ଦେବ । ଏଭଳି ପୂର୍ବରୁ କେବେ ଘଟିନଥିଲା । ସେ କହିଲା, ''ମୁଁ କଲେଜ ବାହାରିଚି ପରା । ଆଜି କେମିତି ଯିବି ? କାହିଁକି ଭଲା ଯିବି ?''

କିନ୍ତୁ କଲେଜ୍‌ରେ କ୍ଲାସ୍ ସାରି ହିଁ ସେ ଚାଲିଗଲା ପାଞ୍ଚ କିଲୋମିଟର ଦୂର ଲେଖକଙ୍କ ବସାକୁ । ପ୍ରଥମ କରି ସେ ଏଥର ଯିବାଆସିବା ଲୋକଙ୍କ ଦୃଷ୍ଟିକୁ ଡରିଲା, ବାହାରେ ସ୍କୁଟର ରଖିଦେଇ ତରତର କରି ମୁହଁ ପୋତି ତାଙ୍କ ଘରେ ପଶିଲା ।

ସେଦିନ ତାଙ୍କ ପାଖରେ ତିନି ଚାରିଜଣ ଟୋକା କିଏ ବସିଥିଲେ । ଜାହ୍ନବୀର ପାଦ ଅଟକିଗଲା । କାନମୂଳକୁ ରକ୍ତ ଉଠିଗଲା । ସେ ଶୁଣିଲା ଲେଖକ ସହଜ ଗଳାରେ ପରିଚୟ କରିଦେଉଚନ୍ତି । ଦେଖିଲା ପିଲାମାନେ ତାକୁ ସମ୍ଭ୍ରମରେ ନମସ୍କାର କରୁଚନ୍ତି । ଜଣେ କହିଲା, ''ମାଡାମ୍, ମୋ ଭଉଣୀ ଆପଣଙ୍କର ଛାତ୍ରୀ । ଆପଣଙ୍କ କଥା ବହୁତ କହେ ଘରେ ।'' ଜାହ୍ନବୀ ନିଚେଇ ଦେଖିଲା, ତା ମୁହଁରେ ବି ନୀଚଜାତୀୟ ଭାବନାର ଲେଶ ନଥିଲା । ଜାହ୍ନବୀ ସାଙ୍ଗରେ ଆଣିଥିବା ବହିଖାତା ରେଜିଷ୍ଟର ଆଦି ଟେବୁଲ୍‌ରେ ରଖିଲାପରେ ବି କିଏ ହେଲେ ତାଙ୍କ ଭିତରୁ ଉତ୍ସୁକ ହେଲାନି, କାହିଁକି ସିଏ ଆସିଚି ବୋଲି । ଓଲଟି ତାଙ୍କରି ଭିତରୁ ଜଣେ କହିବସିଲା କେମିତି ସେମାନେ ଲେଖକଙ୍କୁ ତାଙ୍କ

କ୍ଲବ୍‌କୁ ନିମନ୍ତ୍ରଣ କରିବାକୁ ଆସିଚନ୍ତି। ତାଙ୍କ ଡ୍ରାମା ଦେଖି କିଛି ମାର୍ଗଦର୍ଶନ ଦିଅନ୍ତୁ ବୋଲି ଚାହୁଁଛନ୍ତି। ସେମାନେ ବୋଧେ ଚାହୁଁଥିଲେ, ତାଙ୍କ ସହରବାସିନ୍ଦା ହେଇଥିବାରୁ ତଥା ବୟସ ଓ ପଦଗରିମା ଯୋଗୁଁ, ଜାହ୍ନବୀ ସେମାନଙ୍କ ପକ୍ଷ ନେଇ ଲେଖକଙ୍କୁ ଟିକିଏ ଅନୁରୋଧ କରିବେ। ଅବିଳମ୍ବେ ସେମାନେ ଚାଲିଗଲେ, କାରଣ ଲେଖକ ଜାହ୍ନବୀର ଖାତା ଉଠାଇ ଏମିତି ହାବଭାବ ଦେଖାଇଲେ ସତେକି ଭାରି ଜରୁରୀ କାମ ଚାଲିଚି।

ସେଦିନ ଘରକୁ ଫେରି ଜାହ୍ନବୀ ଡାଏରି ଲେଖିବସିଲା। ହେଲେ, କଲମ ଦେଇ ଜମା କିଛି ଉତୁରିଲାନି କାଗଜ ଉପରକୁ। ଖାଲି ସେଦିନ ନୁହେଁ, କେତେଦିନ ଧରି ଏମିତି ଚାଲିଲା। ଗୋଟିଏ ଅଧେ ଶବ୍ଦ କି ଅଧା ବାକ୍ୟଟିଏ ଲେଖେ ସେ, ପୁଣି କିଟିମିଟି କରି କାଟିପକାଏ। କଲମ ଧରିଲେ ତା ନିଜ ଭିତରୁ ଦୈନନ୍ଦିନର ଆତ୍ମା ବାଦକରି ଠେଲିପେଲି ଆଗକୁ ଆସେ, କୈଫିୟତ୍ ମାଗେ, ପହିଲେ କହ, ତୁ କାହିଁକି ଭଲା ଏମିତି କଲୁ ? ତେଣେ ଆକାର ନେଇ ଆସୁଥିବା ଚରିତ୍ରଟିଏ ଅନୁଭବର ବୋଝକୁ କାନ୍ଧରୁ ଓହ୍ଲେଇ ଦେବାକୁ ଚାହେଁ, ଉଭା ହେଇଯିବାକୁ ଚାହେଁ ପୃଷ୍ଠା ଉପରେ ସଶରୀରେ।

ଏବେ ଟିଭି ପରବା ପରି ମନର ଚିତ୍ର ସଂସାରକୁ ଇଚ୍ଛାମତେ ଅଫ୍ କରିବା ଆଉ ତା ଦେଇ ହେଉନଥିଲା। କେଉଁ ବହି ଭିତରୁ ବାହାରି ଆରବୀୟ ଓଟ ଭଳି ବିଶାଳ ଘଟଣାଟିଏ ତା ସାଦାସିଧା ଟାଁଟ ଭିତରେ ଆସନ ଜମାଇ ବସିଥିଲା। ଆଉ କିଛିହେଲେ ରହିବା, ଦିଶିବା ସେଠି ସମ୍ଭବ ନଥିଲା। ବହିରେ ପୂରି ଉଚ୍ଛୁଳି ପଡୁଥିବା ତା ଘରର ଥାକମାନଙ୍କ ପରି ତାର ସାରାଦିନର ପ୍ରତି ମିନିଟ୍ ସେକେଣ୍ଡ ଗୋଟିଏ ହିଁ ନିବିଷ୍ଟ ଅନୁଭବରେ ଏମିତି ଖୁନ୍ଦାଖୁନ୍ଦି ହେଇ ଭର୍ତ୍ତି ହେଇଯାଇଥିଲେ ଯେ ଆଉ କିଛି କଥା ଘଟିବାକୁ ସେଠି ଜାଗା ନଥିଲା।

ତଥାପି ସୁଅ ମଝିରୁ ନାଉରୀ ଆଗରେ ତୀରର ଦୃଶ୍ୟ ସବୁ ଚାଲିଯାଉଥିବା ଭଳି କଲେଜ କ୍ଲାସ୍, ରୋଷେଇ ଚାକରାଣୀ, ସ୍କୁଟର ମରାମତି, ମା ଲାଗି ଡାକ୍ତର, ବାବୁଲୁର ଦୌରାତ୍ମ୍ୟ, ସ୍କୁଲରୁ ଅଭିଯୋଗ ସବୁ ଚାଲିଥିଲା ଯଥାବତ୍। କଲେଜ ବାଟରେ ଲେଖକଙ୍କ ପାଖକୁ ଚାଲିଯାଇ ସେ ଫେରୁଥିଲା ପ୍ରାୟ ସଞ୍ଜବେଳକୁ। ମା ପଚାରିଲେ କହୁଥିଲା, ଗୋଟିଏ ପେପର୍ ଲେଖିବା ଲାଗି ତାକୁ ବଡ଼ ଲାଇବ୍ରେରୀକୁ ଯିବାକୁ ପଡୁଚି।

ବେଳବେଳେ ଜାହ୍ନବୀକୁ ଲାଗେ କଥାଟା ଜଣାପଡ଼ିଗଲାଣି, କଲେଜରେ ଚୁପ୍‌ଚାପ୍ ହେଲେଣି, ଦୁଧବୁଥ୍‌ରେ ଲୋକେ ତାକୁ ଅଲଗା ଆଖିରେ ଅନାଉଛନ୍ତି। ସେ କବିତାକୁ ଦିନେ ପଚାରିଲା, ''ମୁଁ ଏଇ ସିନେମା-ସାହିତ୍ୟ ଉପରେ ମୋ ପେପର୍‌ଟା ଫାଇନାଲ୍ କରିବାକୁ ମେଘଦୂତଙ୍କ ପାଖକୁ ଯାଉଚି, ତତେ କହିଥିଲି ନା ?'' ତା ଉପସ୍ଥିତି ରେଜିଷ୍ଟାର୍ ଠିକ୍ କରୁ କରୁ କବିତା ପଚାରିଲା—''ହଁ, ସେଠି ପରିଚୟ ହୋଇଥିଲା ବୋଲି ତ କହୁଥିଲୁ। ପୁଣି ଭେଟିଥିଲୁ କି ଏ ଭିତରେ ?''

ଏଭଳି ସେ କ୍ରମେ ଆଶ୍ୱସ୍ତ ହେଲା ଯେ କାହାରି ଖାସ୍ କିଛି ଔତ୍ସୁକ୍ୟ ବା ସନ୍ଦେହ ନାହିଁ ତା ଉପରେ । ସେ ଏଣିକି ଚେଷ୍ଟାକଲା, ଯେମିତି ଏକୁଟିଆ ବସିଥିଲା ବେଳେ ଆଗଭଳି ମୁହଁରୁ ଭୁଟୁଭୁଟୁ କଥା କିଛି ବାହାରି ନଯାଏ କିମ୍ବା ବନ୍ଧୁମେଳରେ ବସିଥିଲା ବେଳେ ଗଳ୍ପ ଜଗତର କଥା ଆଦୌ ନଉଠେ । ଜାହ୍ନବୀ ମନସ୍ଥ କଲା, ଡାଏରିଟିକୁ ସେ ଉପନ୍ୟାସଟିଏର ରୂପ ଦେବ, କାଳ୍ପନିକ ପୃଷ୍ଠଭୂମି ଓ ସହାୟକ ଚରିତ୍ର ଗୁଡ଼ିଏ ନେଇ ସତ ମିଛ ମିଶା ନାନାଦି ଘଟଣାରେ ତାକୁ ସଜେଇବ ଓ ଶେଷରେ ବହିଟିଏ ରୂପରେ ଦୁନିଆକୁ ଛାଡ଼ିଦେଇ ନିଶ୍ୱାସ ମାରିବ । ସେଯାଏଁ କିନ୍ତୁ ତାକୁ ଚୁପ୍ ରହିବାକୁ ପଡ଼ିବ, ଅନୁଭବ କି ଚିନ୍ତା କଳ୍ପନା କିଛି ହେଲେ କାହା ସାଙ୍ଗେ ବଣ୍ଟାବଣ୍ଟି ଚଳିବନି ।

ସଂକଳ୍ପମତେ ତ ଆଉ ନିତିଦିନିଆ ଜୀବନ କାଟିହୁଏନି । ତେଣୁ ବାରମ୍ବାର ତା'ର ନିୟମ ଭାଙ୍ଗିଯାଏ । ବିଶେଷକରି ସ୍ୱୟଂ ଲେଖକଙ୍କ ପାଖରେ ଥିଲାବେଳେ, ଗପିଲାବେଳେ । ଆଗେ ତା'ର ଜୀବନ ବହିଖାତା ଭିତରେ ଓ ଦିନଚର୍ଯ୍ୟା ତଥା ସାମାଜିକ ଜୀବନ ଭିତରେ ବାଣ୍ଟି ହେଉଥିଲା ଓ ଅଲଗା ଅଲଗା ନରହି ସେ ଦୁଇଟି ପ୍ରାୟ ଗୋଳିଆଗୋଳି ହେଇଯାଉଥିଲେ । ଲେଖକ ଆସିଲା ପରେ ତା'ର ମନେହେଲା, ଏଇଟି ହିଁ ତା'ର ସବୁଠୁ ଅନାୟାସ ନିଜସ୍ୱ ଜୀବନ ।

ଲେଖକ ଖୁସି ଥା'ନ୍ତି, ସେ ଥିଲାବେଳେ । ଚୁପ୍‌ଚାପ୍ ସିଗ୍ରେଟ୍ ପିଅନ୍ତି । ସନ୍ତୋଷରେ କହନ୍ତି, ''ଜାଣ, ଆଜି କୋଡ଼ିଏ ପୃଷ୍ଠା ଲେଖିଦେଲି । ନିଜକୁ ମୁଁ କହିଚି, ପ୍ରତିଦିନ ଅନ୍ତତଃ ପନ୍ଦର ପୃଷ୍ଠା ଲେଖିବି ତମେ ଆସିବା ପୂର୍ବରୁ । ତମେ ଆସିବା ହେବ ମୋ ପରିଶ୍ରମର ପୁରସ୍କାର ।'' ଏଣିକି ଜାହ୍ନବୀ ହିଁ ବେଶୀ କଥା କହେ ଓ ଅଭ୍ୟାସମତେ ତା'ର ଅପର ଜଗତର ଚରିତ୍ର ଓ ଘଟଣାମାନ ବୋଲ ନମାନି ସେଥିରେ ପଶିଆସନ୍ତି । କେବେ କେବେ କିଛି କଥାବାର୍ତ୍ତା ନଥାଏ, ଲେଖକ ତାଙ୍କର ଚିଠିପତ୍ର ଲେଖନ୍ତି, ଚା ତିଆରି କରିଆଣି ତାକୁ ଦିଅନ୍ତି । ଥରେ ସେ ତାଙ୍କ ଅସଜଡ଼ା ରୋଷେଇକୁ ସଜାଡ଼ିବାକୁ ଆରମ୍ଭ କରିଥିଲା, ତାଠାରୁ ଏଭଳି କାମ ଅପେକ୍ଷିତ ବୋଲି ଭାବି । ଲେଖକ ହସିଥିଲେ ତାଙ୍କ ସ୍ୱଭାବଗତ ଆମୋଦିତ ହସ, ଯେଉଁଥିରେ ସେ ଛାତକୁ ଅନେଇ ଟିକିଏ ବଡ଼ ପାଟିରେ ହସିବା ଆରମ୍ଭ କରି ତାପରେ ହସର ବୁଦ୍‌ବୁଦମାନଙ୍କୁ ନିଶବ୍ଦ ହେବାଯାଏ ଢୋକିପକାନ୍ତି । ଦୃଷ୍ଟିକୁ ଜାହ୍ନବୀ ଉପରେ ସ୍ଥିର କରି ସେଠୁ ତା ହାତଧରି ଅଟକାଇ କହିଲେ, ''ସେସବୁ ବାଜେ କାମରେ ସମୟ ନଷ୍ଟ କରନା । ମୋ ପାଖେ ବସ । ଗପ କର, ଯାହା ତମର ଖୁସି, କର ।''

ଡାଏରି ଉପନ୍ୟାସରେ ଏକଥା ସବୁ ତାକୁ ଭିନ୍ନ ଭାବେ ବର୍ଣ୍ଣନା କରିବାକୁ ହୁଏ । ବିଧାଡ଼ି ଲେଖିଦେଇ ସେ କେମିତି ବା ପାଠକକୁ ଅନୁଭବ କରେଇ ଦେଇ ପାରିବ ଯେ

ଚମକପ୍ରଦ ଘଟଣା ପ୍ରବାହ ବିନା ଏତେ ମଧୁର ଭାବେ ଜୀବନଟିଏ କିଭଳି ଦିନକୁଦିନ ପରିପୂର୍ଣ୍ଣ ହେଇଯାଉଚି । ତେଣୁ ତା ଗପରେ ସେ ଦୁହେଁ ମୁହଁସଞ୍ଜ ବେଳେ ସହରର ବିସ୍ତୀର୍ଣ୍ଣ ହ୍ରଦ କୂଳର ଗଛ ଛାଇଭରା ରାସ୍ତାରେ ହାତରେ ହାତ ଦେଇ ଚାଲନ୍ତି । ଭାବୋତପ୍ତ କଥାସବୁ ପରସ୍ପରକୁ କହନ୍ତି । କ୍ରମେ ସାରା ସହରରେ ବଦ୍‌ନାମ ଛାଇଯାଏ । ନାୟିକାର ଚାକିରି-ଜୀବନ କଷ୍ଟଦାୟକ ହେଇଯାଏ । ଦୂରରୁ ଖବର ପାଇ ନାୟକର ସ୍ତ୍ରୀ ଆସି ପହଞ୍ଚେ । ଜୀବନ୍ତ ବିଜୁଳି ତାର ପରି ତ୍ରିଭୁଜର ତିନି କୋଣରେ ଠିଆହୁଅନ୍ତି ତିନିହେଁ । ନାୟକ ଅନିର୍ଦ୍ଦିଷ୍ଟ ଭାବେ ସହରରେ ରହିଯିବାକୁ ଚାହେଁ । ଅଭିଜାତ ପତ୍ନୀ ଜରିଆରେ ତା ଉପରେ ଘନେଇ ଆସେ ସମସ୍ୟା ।

ଉପନ୍ୟାସର କିଛି ଅଂଶ ଶୁଣି ଲେଖକ କହିଲେ, ‘‘ମୁଁ ଭାବୁଚି ତମେ ସୁନ୍ଦର ସିନେମା ସ୍କ୍ରିପ୍ଟ ଲେଖିପାରିବ । କାହିଁକି ନ ପାରିବ ? ମୁଁ ତ ଅଛି ଠିକ୍ ଠିକ୍ ବାଗ-ବାଇସ ସବୁ ବତେଇ ଦେବାକୁ, ପୁଣି ବାସ୍ତବ ସିନେମା ଜଗତରେ ତମକୁ ସାହାଯ୍ୟ କରିବାକୁ ।’’ ପୁଣି ସ୍ନେହାର୍ଦ୍ର ହାତରେ, ଆଖିରେ ତାକୁ ଆଉଁଶି ଦେଇ କହନ୍ତି, ‘‘କେତେ ଋଣୀ ମୁଁ ତମ ପାଖେ । ତମ ପାଇଁ ଟିକିଏ କିଛି କରିପାରିଲେ ମୋ ଋଣ ଭାର କମିଯାଆନ୍ତା ।’’

ଥରେ ଥରେ ବିଚିତ୍ର କଥା ହୁଏ, ଯଥା ସେ କହିଲା, ‘‘ସେଦିନ ମନେଅଛି ଚା ତିଆରି କରୁ କରୁ ମୁଁ ତମର ସୁନ୍ଦର ମଗ୍‌ଟା ଭାଙ୍ଗିଦେଲି ଦିଖଣ୍ଡ କରି ରୋଷେଇ ଘର ଡ୍ରୟାର୍‌ରେ ରଖି ଦେଇଥିଲି, କୁଆଡ଼େ ଗଲା ?’’ ଲେଖକ କହିଲେ, ‘‘କାହିଁ ନା ତ । ଚା ତ ମୁଁ ତିଆରି କରେ ।’’ ଜାହ୍ନବୀ ପର୍ସରୁ ଫେଭିକଲ୍ କାଢ଼ି କହିଲା, ‘‘ଭାବିଥିଲି ମଗ୍‌ଟା ଯୋଡ଼ିଦେଇ ମୋ ଟେବୁଲ୍ ଉପରେ ରଖିବି, କଲମ, ପେନ୍‌ସିଲ୍ ରଖିବି ସେଥିରେ ସବୁଦିନ ।’’ ଲେଖକ ହସିଲେ, ତାକୁ ଗେଲକଲେ, କହିଲେ, ‘‘ଏକଥା ତମ ଉପନ୍ୟାସରେ ଘଟିଥିଲା । ମୋ ପାଖେ ସୁନ୍ଦର ମଗ୍ କାହିଁ ?’’

‘‘ହେଲା, ସୁନ୍ଦର ମଗ୍ ନୁହେଁ, ସାଧାରଣ ମଗ୍‌ଟାଏ । ତମେ ଭୁଲିଯାଇଚ, ଗୋଟେଇଲା ବେଳେ ତମ ହାତ ବି କଟିଯାଇଥିଲା, ତମେ କହିଲ ଏ ଦାଗ ସବୁଦିନ ରହିବ । ତମେ ଭୁଲିଯାଇଚ ।’’

ଅଭିମାନରେ ରୁନ୍ଧି ହେଇଥିବା ତା ମୁହଁକୁ ଦେଖି ଲେଖକ ବ୍ୟତିବ୍ୟସ୍ତ ହେଇପଡ଼ିଲେ, ତା ହାତ ଧରି ନେହୁରା ହେଲେ, ‘‘ମୋ ସୁନାଟା, ରାଗନି ମୋ ଉପରେ । ମୋ ମୁଣ୍ଡ ଭିତରେ ନାନା କଥା, ନାନା ସମସ୍ୟା ହାଉଯାଉ ହେଉଥାଏ, ତମେ ଜାଣିନ । ଭୁଲି ଯାଇଥିବି ସତରେ ।’’

ଆଉଥରେ ଯେତେବେଳେ ସେ କହିଲା, "ତମ ସ୍ତ୍ରୀ ପିଲାଛୁଆଙ୍କ ବିଷୟରେ ମୋତେ କିଛି କହନି କାହିଁକି ? ପାଖରେ ଫଟୋ ରଖିବ, ଚିଠି ପାଉଚ, ମୋତେ ଜଣାଉନ କାହିଁକି ?" ତାଙ୍କର ଆଶ୍ଚର୍ଯ୍ୟସହଜ ଉତ୍ତର ଥିଲା, "ତମକୁ ତ ସବୁକଥା କହିଥିଲି ଆରମ୍ଭରୁ । ଲୁଚେଇବି କାହିଁକି ଭଲା ?" ଲେଖକଙ୍କ ଦ୍ୱିତୀୟ ସ୍ତ୍ରୀ ବମ୍ବେର ସୁପରିଚିତ ମଞ୍ଚ କଳାକାର ଥିଲେ ଓ ସୁନ୍ଦର ପାଞ୍ଚବର୍ଷର ପୁଅଟିଏ ବାପାଙ୍କୁ ଗୁଲୁଗୁଲିଆ ଚିତ୍ରରେ ଚିଠି ଲେଖୁଥିଲା, ଯହିଁରୁ ଗୋଟିଏ ତାଙ୍କ ଟେବୁଲ୍ ଉପରେ ଖୋଲା ପଡ଼ିଥିଲା ।

ଲେଖକଙ୍କ କାମ ସରି ଆସୁଥିଲା ପ୍ରାୟ । ପ୍ରତିଦିନ ତାଙ୍କୁ ଭେଟିବା ଏଣିକି ଆଉ ହେଉନଥିଲା । ଲେଖକ ରହୁଥିବା ଅଞ୍ଚଳରେ ପ୍ରାୟ ନାଟକ ମଣ୍ଡଳୀ ଓ ଆଗନ୍ତୁକ କଳାକାର ଜାତୀୟ ଲୋକେ ବେଶୀ ରହୁଥିଲେ ବି ଜାହ୍ନବୀର ଯିବାଆସିବା ଦୃଷ୍ଟିକଟୁ ହେଉଚି ବୋଲି ଦୁହେଁ ସଚେତନ ହେଇଥିଲେ ।

ବାବୁଲୁର ଆଉ ତା ଲେଖାଲେଖିରେ ଆଗ୍ରହ ନଥିଲା ଜମାରୁ । ଉପନ୍ୟାସର ମଝାମଝି ହେଲାବେଳକୁ ଦିନେ ଜାହ୍ନବୀ କବିତାକୁ କହିଲା, "ତୋତେ କଥାଟିଏ କହିବାକୁ ଥିଲା, ମନେଅଛି ?"

"ଆରେ ହଁ ତ । କି କଥା କହିଲୁ ? ତୋତେ ତ ଆଜିକାଲି ଭେଟିବା ବି ମୁସ୍କିଲ୍ ହେଲାଣି । ଦେହପା' ନେଇ କିଛି ... ?"

"ନାଇଁମ । ମୁଁ ପୂରା ଭଲ ଅଛି । ଉପନ୍ୟାସଟିଏ ଲେଖୁଚି, ସେ କଥା ପରେ କହିବି । ଅସଲ କଥା ହେଲା, ଏ ଭିତରେ ବଡ଼ ଘଟଣାଟିଏ ଘଟିଚି ମୋ ଜୀବନରେ ।"

ପୂରା କଥାଟା, ମାତ୍ର ଚାରି ଛଅଟା ବାକ୍ୟ ବି ଲାଗିଲାନି କହିବାକୁ । କବିତା ମୁହଁରେ ବିଶେଷ କିଛି ଭାବର ପରିବର୍ତ୍ତନ ବି ହେଲାନି । କଥାଟା ସରିଲା ପରେ ସେ ନା ପ୍ରଶ୍ନ ପଚାରିଲା, ନା ଉପଦେଶ ଦେଲା । କ୍ଲାସ୍ ଥିବା ଆଳରେ ଚାଲିଗଲା । ଦିଇଟା ପିରିଅଡ୍ ପରେ ସେ ପୁଣି ତାକୁ ଭେଟି କହିଲା, "ତୋଓରି କଥା ମୁଁ ସେତେବେଳରୁ ଭାବୁଚି । କ୍ଲାସରେ ଆଜି ପଢ଼େଇ ପାରିଲିନି । ବଡ଼ ଚିନ୍ତା ଲାଗୁଚି ମୋତେ । ତୁ ଧୀରେ ଧୀରେ ବେଶୀ ବେଶୀ କାଳ୍ପନିକ ଜଗତରେ ବଞ୍ଚୁଚୁ ।"

"ତୁ ଭାବୁଚୁ, ମୁଁ ଏସବୁ ବି ବନେଇ ଚୁନେଇ କହୁଚି ?"

"ନା ନା । ତେବେ, କଥା କଣ କି, ତୁ ବୋଧହୁଏ ବେଶୀ ଗୁଡ଼ାଏ ଅର୍ଥ ଦେଉଚୁ ଅଳ୍ପ ଟିକିଏ ଘଟଣାକୁ । ମାନେ—"

ଆଉ କିଛି ବାକ୍ୟବିନିମୟ ପରେ ଜାହ୍ନବୀ ବିନା ସର୍ତ୍ତରେ ହାର ମାନିଗଲା । କହିଲା, "ହଉ ତେବେ । ମୋ ଉପନ୍ୟାସଟା ସରୁ, ତୋତେ ଆଗ ପଢ଼େଇବି ।"

ସେ ବେଶୀ ସମୟ ଆଉ ମନ ଦେଲା ଉପନ୍ୟାସରେ । ଉପନ୍ୟାସର ଘଟଣା ଚରିତ୍ରମାନେ ଏଣିକି ବେଶୀ ବେଶୀ ନିଜ ବାଟରେ ଚାଲିଲେ, ତା ନିଜ ଜୀବନ କି ଘଟଣାକୁ ଅପେକ୍ଷା ନକରି । ଦିନେ ସେ ଲେଖକଙ୍କୁ ପଚାରିଲା,

''ଏମିତି କେବେ ତମ ସାଙ୍ଗେ ହେଇଚି ଯେ ତମେ ଭାବିଥିବା ବାଟରେ ନଯାଇ ତମ ଗପ ନିଜ ବାଟରେ ଯିବ ?''

''ତମରି ଅବଚେତନ ତିଆରି କରିଥିବ ସେ ବାଟ, ନହେଲେ ଗପ ବିଚରା ପାଇବ କୋଉଠୁ ?''

''କିନ୍ତୁ ତମେ କରିବ କଣ, ଏମିତି ଅବସ୍ଥାରେ ? ଧର ଏମିତି ହେଲା ଯେ ମୁଁ ଯେଉଁ ଲୋକଙ୍କୁ ଘଟଣାକୁ ଜାଣିଚି, ଉପନ୍ୟାସରେ ସେମାନେ ଏକ୍‌ଦମ୍ ଅଲଗା ହେଇଗଲେଣି । ତମ ପ୍ରକୃତ ଜୀବନରେ ତାର ପ୍ରଭାବ ପଡ଼ିବ କି ?''

ସେ ଆଖିବୁଜିଲେ ଟିକିଏ, ସତେକି ଭାବୁଚନ୍ତି, ଛୋଟ ପିଲାଟିଏକୁ କେମିତି ଅଙ୍କଟିଏ ବୁଝେଇବେ । ଆଖିଖୋଲି ଧୀର ଗଳାରେ କହିଲେ, ''ମୋ ଗପକୁ ମୁଁ ମୋ ଗପ ବୋଲି ଭାବେ । ସେଠି କଥାଟିଏ ଘଟିଗଲେ ଚିନ୍ତାରେ ଘାରିହୁଏ ନାହିଁ । କାଟିଛାଟି ଦିଏ ।''

ସେଦିନ ଅନେକ ସ୍ନେହରେ, ତା ଲାଗି ଗୋଳେଇ ହେଉଥିବା ବ୍ୟସ୍ତ ମନରେ ଲେଖକ ଜାହ୍ନବୀକୁ ବୁଝାଇଲେ, ''ତମେ ଲେଖାକୁ ନିଜଠୁ ଦୂରରେ ରଖୁନା କାହିଁକି ? ଲେଖା ଅକ୍ଷରକୁ ଜୀବନ କଲେ ଜୀବନ ତମକୁ ଠକିଦେବ । ପୋଖତ ଲେଖକ କଣ କରେ ଜାଣ ? ଅନୁଭବରୁ ପିଣ୍ଡୁଳାଏ ନେଇ ତହିଁରେ କଳ୍ପନା କଳ୍ପନା ମିଶେଇ ଖଣ୍ଡିଏ ଲେଖାଁ ସୁନ୍ଦର ଖେଳନା ଗଢ଼େ, ପାଠକ ମନକୁ ପାଇଲା ଭଳି ।''

ଜାହ୍ନବୀ ଭାବିଲା, ସେକଥା ତ ମୁଁ ପ୍ରତି ମୁହୂର୍ତ୍ତରେ ନିତିଦିନିଆ ଜୀଇଁବାରେ କରୁଚି । ମୋ ପାଖ ଲୋକେ ଖୁସି ହେଲାଭଳି ଅନୁଭବକୁ ରଙ୍ଗ ଦେଇ ପେଶ୍ କରୁଚି, ମୋତେ ସେମାନେ ସ୍ୱୀକାର କରନ୍ତୁ ବୋଲି । ଲେଖା ଭିତରେ ମୁଁ ମୋ ନିଜ ଖୁସିରେ ନ ରହିବି କାହିଁକି ?

ଏତିକି ବେଳେ ଦିନେ ଲେଖକ ତାକୁ ଚମକାଇ ଦେଇ କହିଲେ, ''ମୋତେ ଫେରିଯିବାକୁ ହେବ । ଜରୁରୀ କାମଟାଏ ଆସି ପହଞ୍ଚିଚି । ମୋ ସ୍ତ୍ରୀଠୁ ଫୋନ୍ ଆସିଥିଲା ।''

''କି ଜରୁରୀ କାମ ?''

''ତମେ ବୁଝିବନି ଠିକ୍ । ମୋ ନୂଆ ଘର ନେଇ କେଶ୍ ଚାଲିଥିଲା । ଘରଟୋଳା ଅଟକି ଯାଇଚି ।''

''ତୁମ କାମ ପୂରା ନ କରି ଫେରିଯିବ ?''

''ପୂରା କରିଦେବି । ବେଶୀ ତ ଆଉ ବାକି ନାହିଁ ।''

ପରବର୍ତ୍ତୀ ଦୁଇଘଣ୍ଟା ପ୍ରାୟ ସେମାନଙ୍କ ଭିତରେ ଆଉ କିଛି କଥାବାର୍ତ୍ତା ନଥିଲା । ତାପରେ ଜାହ୍ନବୀ ଆସି ତାଙ୍କ ଚଉକି ବାଡ଼ରେ ବସିଲା, ତାଙ୍କ ହାତରୁ ବହିଟି ନେଇ ରଖିଦେଲା ସିନେମା ନାୟିକା ପରି । ଲେଖକ କହିଲେ, ''ମୁଁ ଡରୁଥିଲି, କାଳେ ତୁମେ ମୋ ଉପରେ ରାଗିବ, ଏମିତି ଚାଲିଯାଉଚି ବୋଲି ।''

''ଯେବେ ହେଲେ ତ ଯାଇଥାନ୍ତ, ମୋତେ ଛାଡ଼ିଦେଇ ।''

''କେବେ ନୁହେଁ । ତୁ ଚିରଦିନ ପାଇଁ ମୋ ଜୀବନରେ ରହିବୁ । ଆମର ଦେଖା ହୁଏତ ନିକଟରେ ନ ହେଇପାରେ । ତଥାପି ହେବ ତ ନିଶ୍ଚୟ ।''

ଯେଉଁଦିନ ସକାଳୁ ଲେଖକଙ୍କର ପ୍ଲେନ୍ ଧରିବାକୁ ଥିଲା, ତା ପୂର୍ବଦିନ ହିଁ ଦୁହିଁଙ୍କର ବିଦାବିଦି ହେଇଯିବାର ଥିଲା । କାଲି ରାତିରେ ଜାହ୍ନବୀର ଉପନ୍ୟାସରେ ନାୟିକା ସ୍ୱଇଚ୍ଛାରେ, ପ୍ରେମ ଜର୍ଜରିତ ଅବସ୍ଥାରେ, ନାୟକକୁ ଛାଡ଼ି ଚାଲିଯାଇଥିଲା । ହାତରେ ସୁଟ୍‌କେଶଟିଏ ଓ ଛାତିରେ ଆବିଷ୍କାରକର ଖେଳୁଆଡ଼ପଣ ନେଇ ନାୟିକା ବାହାରି ପଡ଼ିଥିଲା ଅଜଣା ଗନ୍ତବ୍ୟ ଉଦ୍ଦେଶ୍ୟରେ । ତା ହାତରେ ଟୁରିଷ୍ଟ ମାନଚିତ୍ରଏ, ସେଥିରେ ସେ ପଢ଼ିଥିବା ସବୁ ଉପନ୍ୟାସର ରାସ୍ତା ଘାଟ ବଣ ସହର ଥିଲା ।

ଲେଖକଙ୍କ ପାଖକୁ ଗଲାବେଳେ ଜାହ୍ନବୀ ଆଖିରୁ ଏତେ ଲୁହ ବହୁଥିଲା ଯେ ତାକୁ ସ୍କୁଟର ଚଳାଇବାକୁ କଷ୍ଟ ହେଉଥିଲା । ଟ୍ରାଫିକ୍ ଛକରେ ନାଲିବତୀ ଯୋଗୁଁ ଅଟକିଥିଲା ବେଳେ ତାକୁ ଅନେଇଥିବା ପାଖ ସ୍କୁଟରବାଲା ଆଡ଼େ ଅନେଇଁ ରୁମାଲରେ ନାକପୋଛି ଜାହ୍ନବୀ ହସିଦେଲା । ତାକୁ ସର୍ଦ୍ଦି ହେଇଛି ଭାବି ଖୁସିବାସିଆ ପଡ଼ୋଶୀ ଆରୋହୀଟି ଟିଭି ଔଷଧ ବିଜ୍ଞାପନର ଉଦ୍ଧୃତି କଲା ''କି ଅବସ୍ଥା କଲଣି ନିଜର । କିଛି ନେଉନା କାହିଁକି ?''

ଲେଖକ ଜିନିଷପତ୍ର ବନ୍ଧାବନ୍ଧିରେ ବ୍ୟସ୍ତ ଥିଲେ । ଦଳେ ଲୋକ ଆସି ପହଞ୍ଚିଥିଲେ ତାଙ୍କଠୁ ବିଦା ନେବାକୁ । ସେ ହସି ହସି ସମସ୍ତଙ୍କୁ କହିଥିଲେ, ''ଆରେ, ଏଠି ତ ସମସ୍ତେ ଦିନକ ଆଗରୁ ମୋତେ ତଡ଼ିବାକୁ ବ୍ୟସ୍ତ ହେଲେଣି ।''

ସେମାନେ ଗଲାପରେ ବି ହାତରେ ଆଉ ବେଶୀ ସମୟ ନଥିଲା । ସନ୍ଧ୍ୟା ପାଞ୍ଚଟାରେ ତାଙ୍କ ଲାଗି ବିଦାୟ ସଭାଟିଏ ବି ଆୟୋଜିତ ହେଇଥିଲା । ସୁଟ୍‌କେଶ୍ ବନ୍ଦକରି ଜାହ୍ନବୀ ପାଖରେ ଆସି ବସି ସେ କହିଲେ, ''ତମେ ଯେଉଁଠି ଥାଅ, ତମ ସ୍ନେହଉଦିଆ ଉପସ୍ଥିତି ମୋ ଜୀବନରେ ଅଛି ବୋଲି ମୁଁ ଜାଣିବି । ମୋତେ ଅବିଶ୍ୱାସ

କରୁଚ କି ? ତମେ ଆସିଲା ଦିନୁ ମୋ ଲାଗି ଜୀବନର ସ୍ୱାଦ କେମିତି ବଦଳି ଯାଇଚି ଜାଣିପାରୁନା ?''

ଜାହ୍ନବୀ ପଚାରିଲା, ''ଆମର ପୁଣି ଦେଖାହେବ ଯେତେବେଳେ, ତମର ମନେଥିବ ତ ଏସବୁ ? ତମେ ତ ଏଇଠି ହିଁ ଭୁଲିଯାଅ କେତେକଥା ।''

ପ୍ରତିରକ୍ଷା ନକରି ସେ ଓଲଟି ଅସ୍ତ୍ର ଛାଡ଼ିଲେ, 'ତମର ବି କଣ ଆଉ ମନେଥିବ ଯେ ? ଯାହା ତମ ମନରେ ରହିବ, କେବଳ ତମ ନିଜ ଉପନ୍ୟାସ-ଗପ ।'

ଲୁହ ଅବାରିତ ବହୁଥିଲା ବେଳେ ଜାହ୍ନବୀ ହସିପକେଇଲା ଓ ସୁଁ ସୁଁ ହେଉ ହେଉ ତା ତାଳୁକୁ ଉଠିଗଲା । ପିଠି ଥାପୁଡ଼ାଇ ଦେଉ ଦେଉ ତାକୁ ଜଡ଼ାଇ ଧରି ସେ ପଚାରିଲେ, ''ଉପନ୍ୟାସ ସରିଲେ ପଠେଇବ ମୋ ପାଖକୁ ?''

ଆଖି ନାକ ରୁମାଲ୍‌ରେ ପୋଛି ତାଙ୍କ ମୁହଁକୁ ଅନେଇଲା ଜାହ୍ନବୀ, ସତେକି ଚାହିଁରହି ମୁଖସ୍ଥ କରିଦେବ । ହେଲେ, ବିନା ଚଷମାରେ ଏତେ ପାଖରୁ ତାକୁ ସ୍ପଷ୍ଟ ଦିଶୁନଥିଲା ସେ ମୁହଁ । କହିଲା, ''ଏବେ ମୋ ଉପନ୍ୟାସ ସରିବ କେମିତି ଯେ ! ଏଇନେ ପରା ମୋ ନାୟିକା ସୁଟ୍‌କେଶ୍ ନେଇ ଷ୍ଟେସନ୍ ବାହାରିଚି ।''

❑❑❑

# ବର

ବାହାଘର ଭୋଜି ଚାଲିଥାଏ, ତେଣେ ନାଟବାଲାଙ୍କ ଗାନାବାଜଣା ଆରମ୍ଭ ହେଇଯାଇଥାଏ । ଖାଇବାରେ ଆଉ ମନ ନଥାଏ କାହାରି, ପିଲାଏ ଅଧାଖିଆରୁ ଉଠି ପଳେଇବାରେ ଲାଗିଥାନ୍ତି । ଦରବୁଢ଼ୀ ଆଈ ଜଣେ କହୁଥାନ୍ତି, ''ଖାଇ ଦେଇ ଯାଆରେ, ଭଲକରି ଖାଇପକା ଆଗ । ନାଟ ତ ହେବ ରାତିସାରା, କେତେ ଦେଖିବ, ଏମିତି ଭୋଜି କେତେଥର ଖାଇବାକୁ ମିଳେ ?''

ମୋତେ ନାଟ ଦେଖିବାକୁ ବି ମିଳେ କେତେଥର ? ଥରେ ଦେଖିଥିଲି କେବେ ଅତି ପିଲାଦିନେ, ସାନ ପିଉସୀଙ୍କ ବାହାଘର ବେଳେ, 'ଉଷାବତୀ ହରଣ', ତା' ବି ଟିକିଏ ବେଳ ନଯାଉଣୁ ଶୋଇପଡ଼ିଥିଲି । ଏଥର ଗଲେ ପୁଣି କେବେ ଛୁଟିରେ ଗାଆଁକୁ ଆସିବା ହେବ, ପୁଣି ସେଇ ଆସିବା ଭିତରେ ନାଟ ଦେଖା ଜୁଟିବ !

ଯଥାକଥା ଖିଆ ସାରି ନାଟ ପାଖେ ପହଞ୍ଚିଲା ବେଳକୁ ଆରମ୍ଭ ହେଇଯାଇଥାଏ 'କର୍ଣ୍ଣବଧ' । ଭିଡ଼ ଜମି ଆସୁଥାଏ, ସ୍ତ୍ରୀଲୋକେ ଏବେବି ତକାହକା ହେଉଥାନ୍ତି, ପିଲାଛୁଆଙ୍କୁ ଥଇଥାନ କରାଉଥାନ୍ତି । ଗୋଟିଏ ଜାଗାରେ ନବସୁଣୁ ମୋତେ ଜଣେ ଟାଣିଲା, ''ଏଠି ଜମା ବସ୍‌ନା । ଏମାନେ ସବୁ ବକର ବକର ହେବେ, ଦଶଥର ଉଠିବେ ମଝିରୁ । ଆ ଆମର ଏକାଠି ବସିବା, ସେଠି ।''

ଗତ ଦି'ଦିନରେ ଜୁଟିଥିବା ସାଙ୍ଗଝିଅମାନେ ସବୁ ଏକାଠି ବସିଥାନ୍ତି । ସେଠି ବସିଲାବେଳକୁ ମୋ ପଛେ ପଛେ ଉଠିଆସିଛନ୍ତି ସତୀବୋହୂ । ନୀର ମୁହଁକୁ ଚାହିଁ ହସିଦେଇ କହିଲେ, ''ମୁଁ ତମ ପାଖରେ ବସିବି ଏଁ, ଝିଅ ।'' ଆମେ ମୁହଁ ଚାହାଁଚାହିଁ ହେଲୁ । ସିଏ ଆଗ ବସିପଡ଼ିଲେ, କାହା ଖୁଡ଼ୀ, କାହା ଆଈ ଓ ମୋ ସମେତ ଆଉ କେତେଜଣଙ୍କର ଲେଖାରେ ସତୀବୋହୂ ମୋତେ ହଠାତ୍ ସାଙ୍ଗକଲା ପରି କାନ୍ଧରେ ହାତଦେଇ କହିଲେ, ''ତୁ ମୋ ପାଖେ ବସ୍, ତୋତେ ମୁଁ ଗୋଟିଗୋଟି କରି ସବୁ ବୁଝେଇ ଦେବି । ମୁଁ ମହାଭାରତ ପୂରା ପଢ଼ିଚି ଆଠଥର ।'' ମୋ ଡାହାଣ ପାଖେ ବସିଥିବା ଜଣେ ହାତ ଦେଇ ହସ ଚାପିଲା, ପାଖରେ ଆଉ ଦି'ଜଣଙ୍କୁ କାନରେ କ'ଣ କହିଲା ।

ଏଇଟା ନୂଆକଥା ନୁହେଁ । ଭିଡ଼ ଭିତରେ ଯୋଉଠି ସତୀବୋହୂ ପହଞ୍ଚନ୍ତି, ସେଠି କାନ କୁହାକୁହି ହସାହସି ଚାଲେ । କହୁଣିରେ କେଞ୍ଚି ମୋତେ ଶାନ୍ତି କହିଲା, "ଦେଖ୍, ତେଣେ ଦେଖ୍ । ରାଜକୁମାରୀ ଆସିଲେଣି, କୁନ୍ତୀ ।"

ଏତେ ଉତ୍ସାହ ମୋର ମିଳେଇଗଲା ଫୋଟକା ଭଳି । ଏଇ ନାଟ ଲାଗି ଏତେ ଉଚ୍ଚାଟ, ଏତେ ଆୟୋଜନ । ପଚାରିଲି, "ଏଇମାନେ ସବୁ ରାଜକୁମାରୀ ଆଉ ତାଙ୍କ ସଖୀ ? ମୁହଁସାରା ଶାଗୁଆ ରଙ୍ଗ ଦାଢ଼ି ଦେଖାଯାଉଛି ।" ମୋ ହସର ଉତ୍ତର ନୀର ଆଉ ଶାନ୍ତି ଅଧାମନ ଥିଲାପରି ଦେଲେ । କଥାଟା ତାଙ୍କୁ ଟିକିଏ ବାଧିଥିଲା ଭଳି ଉତ୍ତର ମିଳିଲା, "ତମେ ସିନା ସବୁ ସିଆଡ଼େ ସିନିମା ଦେଖ । ଆମେ କୋଉଠୁ ପାଇବୁ ? ଆମକୁ ଏଇ ନାଟ ଭଲ ।"

ଯେତେ ସାବଧାନ ହେଲେ ବି ଥରକୁ ଥର ମୁଁ ଏମିତି ଝୁଣ୍ଟୁଚି, ମୋ ବ୍ୟବହାରରେ । ତା'ପରେ ସିନିମା ସାଙ୍ଗେ ତୁଳନା ଭୁଲି ନାଟ ଦେଖାରେ ମନ ଦେଲି ।

କାହାର ଲେଖା ସେ ଯାତ୍ରା, କୋଉଠିକାର ପାର୍ଟି ସେ, କିଏ ବା ତା ନିର୍ଦ୍ଦେଶକ, କିଛି ଆଉ ମନେନାହିଁ । ମନେଅଛି ଏତିକି ଯେ କୁନ୍ତୀ ଚରିତ୍ର ସହ ମୋର ପରିଚୟ ସେତିକିବେଳେ ପ୍ରଥମ କରି । ମହାଭାରତର କାହାଣୀ ମୋଟାମୋଟି ଜାଣିଥିଲି, ଭିନ୍ନ ଭିନ୍ନ ଉପାଖ୍ୟାନ ବି ବିଭିନ୍ନ ଉତ୍ସରୁ ଆସି ମିଶି ସାରିଥିଲା ସ୍ମୃତି ଭିତରେ । ହେଲେ, ସେବେଯାଏଁ କୁନ୍ତୀ ଚରିତ୍ରର କିଛି ବୈଶିଷ୍ଟ୍ୟ ମୋ ଆଖିରେ ପଡ଼ିନଥିଲା । ଯାତ୍ରାରେ କୁମାରୀ କୁନ୍ତୀ ନିଜ ସେବାରେ ଦୁର୍ବାସା ମୁନିଙ୍କୁ ସନ୍ତୁଷ୍ଟ କରି ବର ପାଇଲେ, ଆଉ ପୁଣି ଡାକିଲାମାତ୍ରେ କୁନ୍ତୀଙ୍କ ଆଗରେ ଆସି ଉଭାହେଲେ, ଗାଆଣମାନଙ୍କ ବର୍ଣ୍ଣନା ଅନୁସାରେ, ଅପରୂପ ତେଜବାନ୍ ସୂର୍ଯ୍ୟଦେବ । ସେଇଠୁଁ ଦୀର୍ଘ ସମୟ ଧରି ଚାଲିଲା କୁନ୍ତୀଙ୍କୁ ଦେବତାଙ୍କର ଅନୁନୟ, ଆଉ କୁନ୍ତୀଙ୍କର ନାନାମତେ ନାହିଁ ନାହିଁ । ତା ସାଙ୍ଗକୁ କ୍ରମେ କ୍ରମେ ତାଳ ଲୟ ଗହନ ହେଇଚାଲିଥିବା ଝାଞ୍ଜ ମୃଦଙ୍ଗ ହାର୍‌ମୋନିୟମ୍ । ବାହାର ଗହଳଚହଳ ଏତେ ବେଳକୁ ଆଉ ଜଣାପଡୁନଥାଏ । କଥାବାର୍ତ୍ତା ପାଟିତୁଣ୍ଡ ସବୁ ଚୁପ୍ ପଡ଼ିଯାଇଥାଏ ।

ସେଇ ଆତ୍ମବିସ୍ମୃତ ଅବସ୍ଥାରୁ ମୋତେ ହଲାଇ ଦେଇ ଡାକିଲା ନୀର, "ତୁ ଯିବୁ କି ଆମ ସାଙ୍ଗରେ ?"

"କୁଆଡ଼େ ?"

"ଗାଆଁକୁ ଫେରିବା ପରା ।"

"ଏବେ ଗାଆଁକୁ ଫେରିବା ? ସାରାରାତି ନାଟ ହେବ ଯେ ?"

''ହଉ, ତୁ ତେବେ ଦେଖ୍। ତମର ତ ସବୁ ଯିବ ଜିବ୍ ଗାଡ଼ିରେ, ସକାଳୁ। ଆମେ କୋଉଠୁ ପାଇବୁ ? ଆମେ ଶଗଡ଼ ଗାଡ଼ିରେ ଯିବୁ। ଏବେ ବାହାରିଲେ ପହଞ୍ଚିବୁ ପାହାନ୍ତାକୁ।''

ମୁଁ ଅନେଇଲି, ଖଣ୍ଡେ ଦୂରରେ ଦେଖାଯାଉଥାଏ ଶଗଡ଼ ଗାଡ଼ିଙ୍କ ଗୋଲେଇଛାତ ମାନ, ଲଣ୍ଠନ ଜଳୁଥାଏ ଦି'ଚକ ମଝିରେ, ବଳଦମାନେ ବାରି ହେଉଥାନ୍ତି, ଉପରେ ତୋଫା ଆକାଶଟାଏ। ନିଶ୍ୱାସଟାଏ ଛାଡ଼ିଲି। ଏତେଗୁଡ଼ାଏ ଅଭାବିତ ସୁଯୋଗ ଏମିତି ଏକାଥରେ ଆସନ୍ତି କାହିଁକି ?

ଆଲୁଅ ଘେରରେ ଝାଞ୍ଜ ମୃଦଙ୍ଗରେ ଏବେବି ବୃତ୍ତାକାରରେ ନାଚୁଛନ୍ତି କୁନ୍ତୀ ଓ ସୂର୍ଯ୍ୟଦେବ। ପଚାରିଲି, ''ମୋ ଲାଗି ଜାଗା ହେବ ତ ବଳଦ ଗାଡ଼ିରେ ?''

ଏଥର ଢକଢକ ଦାନ୍ତ ଦେଖାଇ ନୀର ହସିଲା, କହିଲା, ''ତୋ ଜେଜେମା' ବି ଯାଉଛନ୍ତି ଆମ ସାଙ୍ଗରେ, ସେଇଥିଲାଗି ପଚାରିଲି। ହେଲେ, ତମର ତ ମଟର ଗାଡ଼ିରେ ପଁ ପଁ ଉଡ଼ିଯିବ, ରାତିସାରା ଧକଡ଼ ଚକଡ଼ରେ କାହିଁକି ଯିବୁ ? ଖାଲି ଗପିଥାନ୍ତେ ବୋଲି କହୁଥିଲି। ପୁଣି କେବେ ଦେଖାହେବ।''

ଆସିଲା ବେଳେ ଗୋଟାଏ ଜିପ୍‌ରେ ତେରଜଣ ପଶି ଆସିଥିଲୁ, ଜେଜେମା, ସେଇଥିରେ ପୁଣି ଫେରିବାକୁ ଚାହୁଁନଥିଲେ। ତାଙ୍କର ତ ନାଟ ଦେଖାରେ ବି ସଉକ୍ ନଥିଲା। ବୋଧେ ଯାଇ ବସିସାରିବେଣି ଶଗଡ଼ରେ। ଏଣେ ବଡ଼ମା' ଓ ପରିବାରର ଆଉ କେତେଜଣ ବସିଚନ୍ତି। ନୀର ମୋତେ କହିଲା, ''ତୁ ପଚାରିସାରି ଆସିବୁ ଯଦି ଆସିବା କଥା, ମୁଁ ଯାଉଚି, ଆମର ଜିନିଷପତ୍ର ରଖାହେବ।'' ଯାଉଯାଉ ଫେରିଆସି ସେ ପୁଣି ମୋ ପାଖେ ନଇଁପଡ଼ି କହିଲା, ''ଯିବୁ ଯଦି ମୁଁ ତୋତେ ଗପଟା କହିଦେବି ବାଟରେ। ଗଲା ଦଶରାରେ ଆମେ ଦେଖିଥିଲୁ ଏଇ ନାଟ, ଶାନ୍ତିର ତ କେତେଗୁଡ଼ାଏ ପଦ ବି ମନେଅଛି, ତୋତେ ବୋଲି ଶୁଣାଇଦେବ।''

ମୁଁ ବଡ଼ମା'ଙ୍କୁ କାକୁତି ମିନତି କଲି। ଦୂରରୁ ଦେଖିଲି ଶଗଡ଼ମାନଙ୍କରେ ବାକ୍ସପତ୍ର ରଖାହେଉଛି ଓ ଶେଷକୁ ଉଠିଲି। ବଡ଼ମା' ଅନ୍ୟମାନଙ୍କୁ ଶୁଣାଇ କହିଲେ, ଅଧା ଚିନ୍ତା ଅଧା ଗର୍ବରେ, ''ଦେଖ ଆମ ସହରୀ ଝିଅକୁ, ଶଗଡ଼ ଗାଡ଼ିରେ ଯିବ ବୋଲି ବାହାରିଲାଣି। ଆଲୋ ତୋ ବାପମା' ଶୁଣିଲେ ଆମକୁ କହିବେ କଅଣ ?'' ତାଙ୍କ ବିଚାରରେ ଗାଉଁଲି ଜୀବନରୁ ନିଜକୁ ପାରୁପର୍ଯ୍ୟନ୍ତ ବଞ୍ଚେଇ ରଖିବାହିଁ ସହରୀ ଜୀବନର ମୂଳ ଉଦ୍ଦେଶ୍ୟ।

ଭିଡ଼ ବାହାରେ ଠିଆହେଇ ସମସ୍ତେ ଗାଡ଼ିମାନଙ୍କରେ ବସିସାରିବା ଯାଏଁ ଅପେକ୍ଷା

କରି ମୁଁ ନାଟକୁ ଅନେଇ ଥାଏ, କୁନ୍ତୀ ସଦ୍ୟଜାତ ପୁତ୍ର କର୍ଣ୍ଣକୁ ନଈ ସୁଅରେ ଭସେଇ ଦେଉଥାନ୍ତି ।

ମାଳେ ଶଗଡ଼ ଗାଡ଼ି, ଆଠ ଦଶଖଣ୍ଡ ହେବ, ଆଗପଛ ହେଇ ଚାଲିଲେ । ମୋଟାମୋଟି ଗୋଟାଏ ରାସ୍ତାରେ ପଡୁଥିବା ବିଭିନ୍ନ ଗାଆଁର କୁଣିଆମାନେ ଏକାଠି ଫେରୁଥାନ୍ତି, ରାତିବେଳ ବୋଲି । କୋଉଥିପାଇଁ କେଜାଣି, ଗାଡ଼ିଆଳମାନଙ୍କୁ ଛାଡ଼ିଦେଲେ, ପୁରୁଷ କମ୍, ସ୍ତ୍ରୀ ଛୁଆପିଲା ବେଶୀ । ଧାଡ଼ିର ମଝାମଝି ଗୋଟାଏ ଗାଡ଼ିରେ ଛଅଜଣ ଜକାଜକି ହେଇ ବସିଥିଲୁ । ପିଇସୀ ଲେଖାରେ ଦି' ଜଣ, ଆଈ ଜଣେ, ସତୀବୋହୂ, ମୁଁ, ନୀର । ଢେଙ୍କେମା, ହେମନାନୀଙ୍କ ଦି'ପିଲା ତଥା ଅନ୍ୟମାନଙ୍କ ପରିବାରର ଲୋକ ସବୁ ଭିନ୍ନ ଗାଡ଼ିମାନଙ୍କରେ ବସିଥାନ୍ତି, ତେଣୁ ଡକାହକାରେ ଜିନିଷପତ୍ର ତଦାରଖ ହେଉଥାଏ । ନାଟଦେଖାର ଆରମ୍ଭ ଭଳି ମୋର ମୋହଭଙ୍ଗ ଆରମ୍ଭ ହେଇଯାଇଥାଏ ।

ଫର୍ଚ୍ଚା ଜହ୍ନରାତି, ଦୂରଦୂରାନ୍ତଯାଏଁ ଦିଶୁଥିବା କ୍ଷେତ ପଡ଼ିଆମାନଙ୍କୁ ଚିରିଦେଇ ସାମ୍ନାପାଖ କେଉଁ ଗାଡ଼ିରୁ ଟ୍ରାଞ୍ଜିଷ୍ଟରଟିଏ ବାଜୁଥାଏ ଜୋରରେ, ତା ସାଙ୍ଗରେ ମନଇଚ୍ଛା ଝମର ଝମର ବଳଦମାନଙ୍କ ବେକର ଘଣ୍ଟି ଓ ପଛଗାଡ଼ିରୁ ପିଲାଟିଏର ଭେଁ ଭେଁ ରଡ଼ି । ଗପସପ ଯାହା ଆରମ୍ଭ ହେଲା, ଆଉରି ବେତାଳିଆ ।

''ଆହା, ନାଟ କୋଉଯାଏ ଯାଇଥିବଣି କିଏ ଜାଣେ । ଭାଗ୍ୟରେ ନଥିଲା ଦେଖିବାକୁ ।''

''ଆଲୋ ମୋ ଗାମୁଛା ଖଣ୍ଡକ ଶୁଖୁଥିଲା, ଆଣିବାକୁ ଭୁଲିଗଲି ।''

''ଗଲା ଦଶରାରେ କିନ୍ତୁ ଦୁର୍ବାସା ବେଶୀ ଭଲ ପାର୍ଟ୍ କରୁଥିଲା । କୁନ୍ତୀ ବି ।''

''ଆଲୋ ହେମ, ମୋ ଗାମୁଛା ଖଣ୍ଡକ ...''

''ଯା' ମ, କୁନ୍ତୀ ନିହାତି ମୋଟୀଟାଏ ଥିଲା । ଏଥର କୁନ୍ତୀ କେତେ ସୁନ୍ଦର ଦିଶୁଥିଲା, ନୁହେଁ ଲୋ ନୀର ?''

''ଛାଡ଼ ଗୋ, ସେମିତି ହୁଏ ବାହାଘରକୁ ଗଲେ । ହେଲେ ଯାହା କହ ଆଜି ଖଟାଟାର ଜମା ସୁଆଦ ନଥିଲା, ପାଣିଚିଆ ଲାଗୁଥିଲା ନିହାତି ।''

ଦୂରରୁ ବତୀ ଆଲୁଅ ସବୁ ଦେଖାଗଲା, ଦି' ପାଖରେ ଘରଦ୍ୱାର ଆସିଲେ, ଶୋଇ ପଡ଼ିଥିବା ଗାଆଁ ଚେଇଁ ଉଠିଲା, ଆମ ଗାଡ଼ି ମାଳକଯାକ ରହିଲେ । କିଏମାନେ ସବୁ ଏଇଠୁ ଯାଇଥିଲେ । ତାଙ୍କ ଘର ପହଞ୍ଚିଗଲା । ବିଦାବିଦି, ଜୁହାର ଆଶୀର୍ବାଦରେ କିଛି ବେଳ । ସମସ୍ତେ ଓହ୍ଲେଇ ପଡ଼ିଥାନ୍ତି ଯେଝା ଗାଡ଼ିରୁ, ବେଶ୍ ଭିଡ଼ଟିଏ ଜମା

ହେଇଯାଇଥାଏ ଗାଆଁ ଦାଣରେ । ଏକା ସତୀବୋହୂ ବସିଥାନ୍ତି ନିଜ ଜାଗାରେ । ନୀରା ମୋତେ ଠାରି ଦେଖାଇ ଦେଲା, ନିଜ ମନକୁ କିଛି ଗୋଟାଏ ବୋଲୁଥାଆନ୍ତି ବୋଧେ ସେ, ଅତି ଧୀର ସ୍ୱରରେ । ନୀରା କାନ ପାଖରେ ମୁହଁ ରଖି ଆସ୍ତେ କରି ମୁଁ ପଚାରିଲି, ''ତାଙ୍କ ଗାଆଁ କୋଉଠି କି ? ତାଙ୍କ ଗପଟା ତୁ ମୋତେ ଆହୁରି କହିବୁ ବୋଲି କହୁଥିଲୁ ।''

''କହିବି ରହିଥା, ସେ ତ ଆସି ଆମରି ପାଖରେ ଲୁଚିଲେ, ତୋତେ ଆଉ କହିବି କେତେବେଳେ ?''

ଦି' ଦିନ ହେଲା ଏଇ ରହସ୍ୟମୟୀ ନାରୀଟି ବିଷୟରେ ଅନେକ କଥା ଶୁଣି ବି ଆଉରି ଗୁଡ଼ିଏ କଥା ଜାଣିବାକୁ ମନ ଥିଲା ମୋର । ଏବେ ଏତେଗୁଡ଼ିଏ ଲୋକଙ୍କ ଭିତରେ ନିଜ ଇଚ୍ଛାରେ ନା ଗପିହେଉଚି ନା ଶୋଇହେଉଚି ।

ଗାଡ଼ିମାନ ଚାଲିଲା ପୁଣି । ଶୂନ୍‌ଶାନ୍ ରାସ୍ତା, ଦୂର ଯାଏଁ କେହି କୁଆଡ଼େ ଦିଶୁନଥାନ୍ତି । ଏଥର ବାତାବରଣ ଆଗ ଅପେକ୍ଷା ଯଥେଷ୍ଟ ଶାନ୍ତ ହେଇଯାଇଥାଏ । ଗପ ପଡ଼ିଥାଏ ଏଣୁତେଣୁ, ବାହାଘର ଭୋଜିଭାତ ଯାନି-ଯୌତୁକ କଥାର ଭଣ୍ଡାର ସବୁ ସରି ସାରିଥାଏ । ଆଗପଟ ଗାଡ଼ିରୁ ଟ୍ରାଞ୍ଜିଷ୍ଟର ବନ୍ଦ ହେଇଯାଇଥାଏ କେତେବେଳୁ । ଅମୁକ ଗାଆଁର ସମୁକ ଘର ସାନଝିଅ ଲକ୍ଷ୍ମୀ କଥା ପଡ଼ିଥାଏ, ଯିଏ ଦି' ମାସ ତଳେ ମରିଗଲା ହଠାତ୍ । ତାକୁ ବିଷ ଦେଇ ମାରିଦେଲେ ତା ନିଜ ଘରଲୋକେ, ଦଉଡ଼ି ଦେଇ କାଳେ ଜମା ମରିନି ସେ । ପୁଲିସବାଲା ଆସିଥିଲେ, ଟଙ୍କା ପଇସା ବଳରେ ଚପେଇ ଦିଆହେଲା ସବୁକଥା । ସେ କଥାର ଖିଅ ବି ଛିଡ଼ିଗଲା—ବହୁତ ଥର ଗପି ହେଇ ହେଇ ଧାର ମରିଯାଇଥିଲା କଥାଟାର । ସତୀବୋହୂ ତାଙ୍କର ପଦାକୁ ଚାହିଁ ବସିଥାନ୍ତି, ହେମନାନୀ ମାୟାନାନୀ ଫୁସୁରୁ ଫୁସୁରୁ ହେଇ ହସାହସି ହେଉଚନ୍ତି, ଝିକରପୁର ଆଇ ଢୁଳେଇଲେଣି । ନୀରା କହିଲା, ''ନାଟ କେତେବାଟ ଯିବଣି କହିଲୁ ? କୁନ୍ତୀଙ୍କର ପୁଅମାନେ ସବୁ ଜନ୍ମ ହେବେଣି, ନାଇଁ ?''

ହେମନାନୀ କହିଲେ, ''ଯାଃ, ସେତିକି ହେଲେ ଦେଖିଦେଇ ଆସିଥାନ୍ତେ । ଦେଖୁନୁ, ବିଚାରୀ ଲକ୍ଷ୍ମୀ ଆମର ପିଲାଟିଏ ଜନ୍ମକରି କେତେ ଦୁଃଖ ପାଇଲା, ଆଉ ସେ ଯୁଗରେ କୁନ୍ତୀ କେଡ଼େ ସୁବିଧାରେ ଖସିଗଲେ ।''

''ରଜା ଝିଅ ହେଇ ସେ ସେମିତି ବର ମାଗୁଥିଲେ କେମିତି, ସେ ବୁଢ଼ା ଦୁର୍ବାସା ଭଲା ଦେଉଥିଲା କେମିତି ? କଣନା ତୁ ଯାହାକୁ ଡାକିବୁ, ସେ ତୋ ପାଖକୁ ଆସିବ !''

''ଡାକିବୁ ମାନେ କ'ଣ ? ଦୁର୍ବାସା କହିଲେ, 'ଇଚ୍ଛିବୁ ।' ଶୁଣିଲୁ ନାଇଁ ।''

''ମାଗିବା ଲୋକର ଭାଗ୍ୟ, ନା କ'ଣ ଲୋ ଝିଲି ? ବରଦାନ ଦେବା ଲୋକ ବି ସେମିତି ଥିଲେ ହେଲା ।''

''ନାଇଁ ମ ନାନୀ, ମୁଁ କହୁଚି, 'ଭଲ ବରଟିଏ ପାଆ', ମାନେ ସର୍ବଗୁଣର ସ୍ୱାମୀଟି ପାଆ ବୋଲି ତ ଋଷି କହିପାରିଥାଆନ୍ତେ ? କହିଲେ କ'ଣ ନା ଯାହାକୁ ତୁ ଚାହିଁବୁ, ସିଏ ଆସିବ—''

''ଇଚ୍ଛିବୁ ।''

''ହଁ ମ । ତା ଅର୍ଥ ତ ସେଇଆ ।''

''ସିଏ ପୁଣି ସେଇକ୍ଷଣି ଯାହାକୁ ଆଗରେ ଦେଖିଲେ ଡାକି ପକେଇଲେ, ନୁହେଁ ?''

''ଖାଲି କ'ଣ ଡାକିଲେ ? ଇଚ୍ଛିଥିବେ—''

ଆଈଙ୍କର ନିଦ ଭାଙ୍ଗି ଯାଇଥିଲା, ତାଙ୍କ ଚିଡ଼ିଚିଡ଼ା ସ୍ୱର ଶୁଭିଲା, ''କାଇଁ ଏଣୁତେଣୁ କଥା ସବୁ କହୁଚ କିଲୋ ? ପୁରାଣରୁ ଏତିକି ସାରକଥା ପାଇଲ ?''

''ନାଇଁ ଗୋ କାକୀ, ତମେ କହ ଦେଖି, ରଜା ଝିଅ, ପୁଣି ଏତେ ଗୁଣବନ୍ତ ଝିଅ ହେଇ ଏତେ ଲୋକଙ୍କୁ ଇଚ୍ଛି ପକେଇଲେ ଥରକୁ ଥର, ହେଲା ବା ତାଙ୍କ ପତି କହିଲେ ତାଙ୍କୁ—''

''ତୋ ମନଟା ଯାଇ ସେଇଠି ଅଛି । ତୋ ପତି କହିଲେ ତୁ କାହାକୁ ସବୁ ଇଚ୍ଛନ୍ତୁ କହୁନୁ ।''

''ତୋ ବରକୁ ଆଗ ଇଚ୍ଛନ୍ତି । ହି-ହି-ହି-ହି—''

ଆଈ ରାଗୁଚନ୍ତି, ''ଲାଜ ସରମ ନାହିଁଲୋ ହେମ, ଦି' ପିଲାର ମା ହେଲୁଣି ।''

''ଆଉ ତୁ କାହାକୁ ଇଚ୍ଛନ୍ତୁ, ସେଇ ରବି ମାଷ୍ଟ୍ରକୁ ?''

ସରୁ ଚଟକଣି, ମିଛ ଧରାପରା, ହିଁ ହିଁ-ଖି ଖି ।

''କାହିଁକି ଏଗୁଡ଼ାଙ୍କ ସାଙ୍ଗରେ ବସିଲାରେ ମଣିଷ, ଧର୍ମଛଡ଼ା କଥା କହୁଚନ୍ତି । ରଇଥା, ତମ ଶାଶୁଙ୍କୁ ସବୁ କହୁଚି ।''

''ନାଇଁ ଗୋ ବଡ଼ମା, ନାଟରେ ଦେଖିଲା କଥା ତ କହୁଚୁ, ପୁରାଣ କଥା । ମନରୁ ଫାନ୍ଦି କହୁଚୁ ନା କ'ଣ ଯେ ପାପ ଲାଗିବ ।''

''ସିଏ ସବୁ ସତ୍ୟ-ତ୍ରେତା ଯୁଗର କଥା ଲୋ ଝିଅ, ଠାକୁର ଦେବତାମାନଙ୍କ କଥା । ତମ ଆମ କଥା ନୁହଁ । ଏମିତି ହସିଲେ ଥଟ୍ଟାକଲେ ପାପ ଲାଗିବନି ?''

ଏଥର ନୀର ବି ଦି' ପାଖିଆ ହେଇ ବୟସ୍କ ସ୍ୱରରେ କହିଲା, ''ଆଉ କ'ଣ ? ଏବେ ତ ଘୋର କଳିକାଳ, ନୁହଁ ଆଇ ? ଏମିତି ସବୁ ବର କ'ଣ ଥାଏ ଆଜିକାଲି ?''

''ହଁ ଥାଏ । ବର ଥାଏ । ମୁଁ ଜାଣିଚି । ମୋ ପାଖେ ଥିଲା ।''

ସତୀବୋହୂଙ୍କ ମୁହଁରୁ ବାହାରିଥିଲା କଥାଟା । ସମସ୍ତେ ଅନେଇଲେ ତାଙ୍କ ଆଡ଼େ, ଚମକୃତ ହେଲାଭଳି, ଅନ୍ଧାରକୁ ଅଣ୍ଡାଳିଲେ ଆଖିରେ ତାଙ୍କ ମୁହଁକୁ କଥାକୁ ବୁଝିବାଲାଗି । ମାୟାନାନୀ ପଚାରିଲେ, ''କଣ କହିଲ ଗୋ ? କି ବର ଥିଲା ତମ ପାଖରେ ?''

ଅନ୍ୟମାନେ ସଦ୍ୟ ଜାଣୁଥିଲେ ସତେ କି ତାଙ୍କ ଉପସ୍ଥିତିକୁ । ଏତେବେଳଯାଏଁ ତାଙ୍କ କଥା ଆଉ କାହାରି ମନେ ନଥିଲା । ପୁଣି କହିଲେ ସତୀବୋହୂ, ''ଏମିତି ବର ଥାଏ । ଯାହାକୁ ଇଚ୍ଛା କରିବ, ଅନେଇ ଦେଲା ମାତ୍ରେ ସିଏ ତମ ପାଖକୁ ଆସିବ ।''

''ଏମିତି ବର ଥିଲା ଖାସ୍ ତମ ପାଖରେ ?''

''ତୁନି ହୁଅ ସତୀବୋହୂ । ଏମାନଙ୍କ ଆଗରେ ଏଣୁତେଣୁ ଗପନା ବାଏରୀ ଭଳି ।''

ସତୀବୋହୂ ବାଧ ପିଲାଭଳି ତୁନି ହେଲେ । ହେମନାନୀ ମାୟାନାନୀ ଫୁସ୍‌ଫାସ ହେଲେ । ନୀର ମୋ କାନରେ ଫୁସୁରୁ ଫୁସୁର କଲା । ମୁଁ ବିଶି ଆଙ୍ଗୁଠିରେ କାନ କୁଣ୍ଡେଇ କହିଲି, ''ଥାଉ ଥାଉ, ମୋର ମନେ ଅଛି ସବୁକଥା ।''

ସତୀବୋହୂ ବିଷୟରେ ବିଶଦ ଆଲୋଚନା ହେଉଥିଲା ଆଜି ଦିପହରେ, ବାହାଘର ଗହଳିଭିତରେ । ଖିଆପିଆ ସାରି ସମସ୍ତେ ଗଡ଼ପଡ଼ ହେଉଥାନ୍ତି, ଏଠି ସେଠି ଦଳେ ଲେଖାଁ ବସି ଗପ ଯୋଡ଼ିଥାନ୍ତି । ଲମ୍ବ କୋଠରିଟିର ଗୋଟିଏ କଣରେ ବସିଥାନ୍ତି ସେ, ସତ୍ୟଭାମା—ଭିନ୍ନ ଭିନ୍ନ ଲୋକଙ୍କର ସତୀକାକୀ, ସତୀବୋହୂ, ସତୀ ପିଇସୀ । ଗରିବ ଦୁଃଖିନୀ ଭଳି ଦିଶୁଥିବା କିଏ ଜଣେ କୁଣିଆ ସ୍ତ୍ରୀଲୋକ କ'ଣ ବଖାଣୁଥାଏ ତାଙ୍କ ଆଗରେ, ସେ ବସି ଶୁଣୁଥାନ୍ତି । ପଛରେ ତାଙ୍କୁ ଡକାଯାଏ ସତୀବେଡ଼ୀ, ସତୀ ବାଏରୀ, ସତୀ ଛାଡ଼ରୀ । ମୋତେ ନିଜ ତତ୍ତ୍ୱାବଧାନରେ ଆଣିଥିବା ମୋ ବଡ଼ମା ସକାଳେ ସତୀବୋହୂଙ୍କ ପାଖେ ଦେଖି ଅଲଗା ଡାକିନେଇଥିଲେ, କହିଥିଲେ, ''ତା ସାଙ୍ଗେ କଥା ହେବୁନି, ବୋହୂ ମାନ୍ୟ କରି ଜୁହାର କଲୁ, ଭଲକଥା, ଆଉ ତା ପାଖକୁ ଯିବା ଦରକାର ନାହିଁ । ତୋ ମା ଜାଣିଲେ ରାଗିବ ।'' ଡେଙ୍ଗୀ ପାତଳୀ ସ୍ତ୍ରୀ ଜଣକ ସେତିକିରେ ମୋ ଲାଗି ରହସ୍ୟମୟୀ ପାଲଟିଯାଇଥିଲେ । ମୋତେ କଦବା କେବେ ଛୁଟିରେ ଏମିତି ଗାଆଁ ଆଡ଼େ ଆସିବାର ସୁଯୋଗ ମିଳେ, ଆଉ ବାପା, ମା,

ପରିବାରର ଗଡ଼ଖାଇ ଟପିଲା ମାତ୍ରେ ହିଁ ମୋ ଆଖିକାନ ଖୋଜିବୁଲୁଥାଏ ଚାରିଆଡ଼, କିଛି ଗୋଟାଏ ଚମକ ପାଇବା ଆଶାରେ। ପୁଣି ଏମିତି ଗୋଟାଏ ନୂଆ ଜାଗା, ଅଧାଚିହ୍ନା ଲୋକଙ୍କ ଗହଳ ଚହଳ ଭିତରେ, ଦିନଚର୍ଯ୍ୟାର ରୂପରେଖ ନଥିବା ଦିନମାନଙ୍କରେ ମୋତେ ସବୁଠି ଦିଶୁଥାଏ ରହସ୍ୟ, ରସର ସମ୍ଭାବନା।

ଆଜି କୋଠରିର ଆଉ ଗୋଟିଏ ପାଖରେ ପଡ଼ିଥାଏ ସତୀବୋହୂଙ୍କ ଚର୍ଚ୍ଚା। କାନ୍ଥକୁ ଆଉଜି ବାକ୍ସଟିଏ ଉପରେ ବସି ସତ୍ୟଭାମାଙ୍କ ଅତୀତ ଜୀବନ କାହାଣୀ ବଖାଣୁଥାନ୍ତି ଜଣେ, ଆଉ କେତେଜଣ ଅଧା-ବସା-ଶୁଆ ଅବସ୍ଥାରେ ତାଙ୍କ କଥା ଶୁଣୁଥାନ୍ତି, ମଝିରେ ମଝିରେ ପଦେଅଧେ ଯୋଡ଼ୁଥାନ୍ତି—କଥା କଟାକଟି ସଂଶୋଧନ ବି ଚାଲିଥାଏ। ସବୁ ବୟସର ସ୍ତ୍ରୀ ଥା'ନ୍ତି ସେଠି। ଆଠ ନଅ ବର୍ଷର ଝିଅଠୁ ବୁଢ଼ୀ ଯାକେ। ଏମିତି ପରିବେଶ ଆଜିଯାଏଁ ମୋତେ ହାତଗଣନ୍ତା କେଇଥର ମିଳିଥିବ। ହେଲେ ସେଥିରେ ମୋତେ ମିଳିଥାଏ ଏକପ୍ରକାର ମୁକ୍ତିର ସ୍ୱାଦ। ବାଲ୍ୟକାଳର ନିଉନପଣରୁ ବାମନପଣରୁ ମୁକ୍ତିର। ଏଠି ଗପସପ ବେଳେ ବକ୍ତାଶ୍ରୋତା ଆଦିଙ୍କ ବୟସର କିଛି ବିଶେଷ ବାରଣ ନଥାଏ। ନିହାତି ସେମିତି କିଛି କଥା ପଡ଼ିଲେ ଜଣେଅଧେ କିଏ ଯଦିବା କହିଦିଏ—'ହେ, ସାନପିଲା ଅଛନ୍ତି, କହନା' ଅଥବା 'ପିଲାଏ ତମେ ସବୁ ଗଲ ତେଣେ', ତେଣିକି ପିଲାଏ ଖଣ୍ଡେବାଟ ବୁଲିଆସି ପୁଣି ସାମିଲ ହେଇଗଲେ କି ଦୂରଛଡ଼ା ହେଇ ଶୁଣିଲେ କେହି ସେଥିକି ନିଘା ରଖନ୍ତିନି। ତା ଛଡ଼ା, ଦେହ ଟିକିଏ ବଢ଼ିଆସିଲା କ୍ଷଣି ଝିଅପିଲାଏ ତ ସହଜେ ସ୍ତ୍ରୀଲୋକରେ ଗଣାଯାଆନ୍ତି।

ସତୀବୋହୂଙ୍କୁ ଜଣାନଥାଏ ତାଙ୍କରି ବିଷୟରେ ତେଣେ ଚର୍ଚ୍ଚା ଚାଲିଛି ବୋଲି। ଅଳ୍ପ ଦୂରରେ ଚିତ୍ରପଟ ଭଳି ସେ ବସିଥାଆନ୍ତି, କି କଥା କେଜାଣି ଏକାଗ୍ର ହେଇ ଶୁଣୁଥାନ୍ତି, ଓଠ ଗୋଜେଇ ଚୁଚୁ କରୁଥାନ୍ତି। ପୁଣି ମୁରୁକି ହସି ଦେଉଥାନ୍ତି ବି। ସତ୍ୟଭାମା କାଳେ ବଡ଼ଘରର ଝିଅ, ବଡ଼ଘରର ବୋହୂ। ବକ୍ତାଙ୍କର ଅମୁକ ଲେଖାରେ ଖୁଡ଼ୀ, ସମୁକ ଲେଖାରେ ମାଉସୀ ('ବୟସରେ ମୋଠୁଁ ଢେର୍ ବଡ଼ ଯେ ସିଏ, ପିଟିଦେଲା ରକମର ଦେହଟା ବୋଲି ସିନା ବୟସ ଜଣାପଡୁନି')। ଅଳ୍ପ ବୟସରେ ବାହାଘର ହେଇଥିଲା, କେତେ ଜାକଜମକରେ, ଯିଏ ଯାଇଥିଲା ତା'ର ପାସୋର ଯାଇନଥିବ। କନ୍ଦର୍ପ ପରି କେଡ଼େ ସୁନ୍ଦର ବର, ପୀତାମ୍ବର କକେଇ। ତା'ପରେ ସତୀ ଗୋଟିକ ପରେ ଗୋଟିଏ ଚାରି ପୁଅଝିଅ ପାଇଲା। କେଡ଼େ ସୁନ୍ଦର ଘରଦ୍ୱାର, କେଡ଼େ ଭାଗ୍ୟ କଲେ ମିଳେ। କି ସୁନ୍ଦର ରୂପ ନଥିଲା ସତୀର, ମନେ ଅଛି ନା, ସୁନାଖଡ଼ିକାଟିଏ। ସେଇଠୁ ଘଟିଲା ସେ ଘଟଣା। ତା ବଡ଼ଝିଅ ଚଉଦ ବର୍ଷର ହେଇସାରିଥାଏ, ତାକୁ ମାଗି ସାରିଥାନ୍ତି ସମୁକ ଗାଆଁର ଗଉନ୍ତିଆ ଘର, ଛଅ ତୋଳା

ସୁନାର ହାର ଓ ପାଟଶାଢ଼ି ଦେଇ ନିର୍ବନ୍ଧ କରିସାରିଥାନ୍ତି । ସେତିକି ବେଳେ ଆସିଲା ସେ ନାହିଁନଥିବା ଅଘଟଣ । ଗାଆଁକୁ ଆସିଥିଲେ ଋଷିକେଶରୁ ଜଣେ ସାଧୁବାବା । ମାସ କେତେ ଧରି ସେ ଆଖପାଖ ଗାଆଁରେ ପ୍ରବଚନ ଦେଉଥାନ୍ତି, ବଡ଼ ବଡ଼ ଲୋକଙ୍କ ଘରେ ରହୁଥାନ୍ତି । ଲୋକଙ୍କଠୁଁ କେତେ ପୂଜାଅର୍ଚ୍ଚନା ଭୋଗ ଦକ୍ଷିଣା ପାଉଥାନ୍ତି, କର୍ଣ୍ଣମନ୍ତ୍ର ଦେଉଥାନ୍ତି । ସତ୍ୟଭାମାଙ୍କ ଶାଶୁଘରେ ବି ସେ ଆସି ରହିଲେ । ଆଚମ୍ବିତ ଘଟଣା ଘଟିଲା । ଦିନେ ସକାଳୁ ସିଦ୍ଧବାବା ସତୀବୋହୂକୁ ନେଇ ଫେରାର୍ ହେଇଗଲେ ।

ସତ୍ୟଭାମାଙ୍କ ଶାଶୁଘରେ କାଳ ପଡ଼ିଗଲା । କାନ୍ଦ ବୋବାଳି, ହୀନସ୍ତା ହଟହଟା । ଝିଅର ସମ୍ବନ୍ଧ ଭାଙ୍ଗିଗଲା, ବେଭାର ଜିନିଷ ଫେରିଆସିଲା । ସତୀବୋହୂଙ୍କ ବାପଘରକୁ ଯାଇ ତାଙ୍କ ସ୍ୱାମୀ ପହଞ୍ଚିଲେ, କହିଲେ—"ତମ ଝିଅ ମୋ ପାଇଁ ମରିଗଲା ଜାଣ । ମୋତେ କୋଉ କୁଳକୁ ରଖିଲା ନାଇଁ ।"

ସତ୍ୟଭାମାର ବି ଚାରି ଧୁରନ୍ଧର ଭାଇ, ଦଶଖଣ୍ଡ ଗାଆଁରେ ତାଙ୍କୁ ଡରନ୍ତି ଲୋକେ । କହିଲେ, "କିଓ ଆମକୁ କ'ଣ କହୁଚ ତମେ ? ଆମେ କ'ଣ କଲୁ ? ନିଜ ମାଇପଟାକୁ ରଖିପାରିଲନି, ଘର ଭିତରରୁ ବାବାଜି ନେଇଗଲା ! ଦଉଡ଼ି ଦେଇ ମରୁନା ?"

ସେଇଠୁ ପୀତାମ୍ବର କକେଇ ଭୋ ଭୋ କାନ୍ଦିଲେ । କେଡ଼େ ନାଆଁ ଥିଲା ତାଙ୍କର ସେତେବେଳେ, କଲେଜ ପାଠ ପଢ଼ିଥିଲେ ପରା ବିଏ ନା ଏମେ, ସରକାରୀ ଚାକିରିକୁ ଗୋଇଠା ମାରିଦେଇ ଆସିଥିଲେ ନିଜ ଘରର ବିସ୍ତର ଚାଷବାସ ସମ୍ଭାଳିବେ ବୋଲି । ତାଙ୍କରି ଭାଗ୍ୟରେ ଏଇଆ ଲେଖା ଥିଲା । କହିଲେ, "ସବୁ ଦୋଷ ମୋ'ରି । ହେଲେ, ଏବେ ମୁଁ କ'ଣ କରିବି କହ ? ତାକୁ ଖୋଜିବାକୁ ଯିବି, ନା ପୁଲିସିରେ ଖବର ଦେବି, ନା କ'ଣ କରିବି, ତମେ କହ ।"

ଶଳାମାନେ କହିଲେ, 'ପୁଲିସିରେ କହନା, ସମସ୍ତଙ୍କ ମୁହଁରେ କାଳି ଲାଗିବ, ଆଉରି ହୀନସ୍ତା କେଚ୍‌କେଚା ହେବାକଥା ସଂସାର ଯାକରେ । ସିଏ ଆମକୁ ଲାଗିଲା, ଆମେ ଯାଉଚୁ ତାକୁ ଫେରେଇ ଆଣିବୁ ।' ପୀତାମ୍ବର କହିଲେ, 'ଦେଖ, ଅସତୀ ସ୍ତ୍ରୀ ଯଦି ଏବେ ଫେରିଆସେ, ମୁଁ ତାକୁ ଘରେ ରଖିଲେ ସଂସାରରେ ମୋର କି ଦଶା ହେବ, ମୋ ପିଲାଛୁଆ କି ଅବସ୍ଥା ଭୋଗିବେ, କହ ଦେଖି । ତମେମାନେ ତ ମୋର ଭାଇ ସମାନ ରହିବ ସବୁଦିନେ, ଶାଶୁ ଶଶୁର ବି ବାପ ମା' ସମାନ ରହିବେ । ତେବେ ଅସତୀ ସ୍ତ୍ରୀକୁ ଆଉ ମୁଁ ରଖିବି କେମିତି ? ସେ ଫେରିଲେ ତମ ପାଖେ ରହିବ ।'

ଭାଇମାନେ ଗୁମ୍ ହେଇ ରହିଲେ, କ'ଣ ଆଉ କହନ୍ତେ ? ତା'ପରେ ସେମାନେ କିଛିଦିନ ଲାଗି ଗାଏବ ହେଇଗଲେ, ଚାରିକି ଚାରିହେଁ । କୁଆଡ଼େ ଉଆଲଟିଅର ନା

ରାଏପୁର ଆଡ଼େ ଗଲେ କିଏ ଜାଣିଚି । ବାଟରେ କୋଉ ଗାଆଁରୁ ସବୁ କି ଖୋଜଖବର ନେଲେ, ଫେରିଲେ ସତୀବୋହୂଙ୍କୁ ସାଙ୍ଗରେ ଧରି ।

ଗପ ଶୁଣିଲାବାଲାଙ୍କ ସାଙ୍ଗେ ବକ୍ତା ବି ଚୁପ୍ ହେଇଗଲେ ଟିକିଏ ବେଳ, ତା'ପରେ ନଇଁପଡ଼ି ଫୁସ୍‌ଫୁସ୍ କରି କହିଲେ—''କିଏ ଜାଣିଚି ସତ କି ମିଛ, ହେଲେ ଦଶଖଣ୍ଡ ଗାଆଁର ଲୋକେ କହିଲେ, ସେଇ ଉଆଲ୍‌ଟିଅର ବାଟେ କୋଉଠି ଯାଇ ବାବାଜି ଉଠିଥିଲା ସାଙ୍ଗରେ ସତୀକୁ ଧରି, ଏମାନେ ପହଞ୍ଚି ଗୁଣ୍ଡା ଲଗେଇ ତାକୁ ସାବାଡ଼୍ କଲେ । କିଏ କହିଲା, ବାବାଜି ଛିଅଲ ଗଲା, କିଏ କହିଲା, ତାକୁ ଜୀବନରୁ ମାରି ପୋତି ଠିକଣା କରିଦେଇ ଆସିଲେ ଭଉଣୀକୁ ନେଇ । ସେ ଫେରିଆସିବାର ଦିନ କେତେ ପରେ ମୁଁ ତାଙ୍କ ଗାଆଁକୁ ଯାଇଥିଲି, ସତୀର ବାପଘର ଗାଆଁକୁ । ସମସ୍ତେ କହୁଥାନ୍ତି ସତୀ ଘରୁ ବାହାରୁନି, କବାଟ କିଳି ରହୁଚି, ବାଏରୀ ହେଇଯାଇଚି ।''

ପ୍ରସଙ୍ଗଟା ଅବଶ୍ୟ ଏତେ ସାବଲୀଳ ଭାବେ କୁହାଯାଇ ନଥିଲା କିମ୍ବା କୁହାସରିଲା ପରେ ବି କାହାଣୀଟିକୁ ନିର୍ବିବାଦ ଅନ୍ତଟିଏ ଦିଆଯାଇ ପାରିନଥିଲା । ଭିନ୍ନ ଭିନ୍ନ ପ୍ରକାରର ମତାମତ ସବୁ ଆସିଥିଲା ।

''ନାଇଁ ମ, ସତୀ ଟିକିଏ ବେଡ଼ୀ ରକମର ମୂଳରୁ ଥିଲା, ମୁଁ ପରା ତାକୁ ପିଲାଦିନୁ ଜାଣେ । ଆମେ ପୋରୁ ଏକାସାଙ୍ଗେ ଗାଧୋଇବାକୁ ଯାଉ, ସେ ତା'ର ଗାଧଉଥିବ ଅଲଗା ହେଇ, ସମସ୍ତଙ୍କର ଗାଧୁଆ ସରିବ ତା'ର କିଛି ଖିଆଲ୍ ନଥିବ କୁଆଡ଼କୁ ...''

''ସେତେବେଳେ ସେ ବାବାଜି ଆସିଲା ବେଳକୁ ତା'ର ସେ ଆଡ଼୍‌ପାଗଲା ରୋଗ ବାହାରିଥିଲା ହଠାତ୍, ସମସ୍ତେ ଦେଖିଥିଲେ ।''

''କାଇଁ ଆମେ ତ ଦେଖିନୁ, ଜାଣିନୁ । ଏମିତି ଗେହ୍ଲାରେ ସତୀବେଡ଼ୀ ବୋଲି ଡାକୁଥିଲେ ତାକୁ ପିଲାଦିନେ । ନହେଲେ କେତେ ଗୁଣର ଝିଅଥିଲା, କେଡ଼େ ସୁନ୍ଦର ଘରଦ୍ୱାର କରିଥିଲା ।''

''ନାଇଁ ଗୋ, ବାବାଜି ସାଙ୍ଗରେ ପଳେଇଯିବା କଥା ଖାଣ୍ଟି ସତ, ତମେ ତାଙ୍କ ଗାଆଁସାରା ଲୋକଙ୍କୁ ପଚାର, ଆଖିଦେଖା କଥା ଲୋକ କହିବେ ।''

ଖଣ୍ଡେ ଦୂରରେ ଏତେବେଳ ଯାଏଁ ଶୋଇଥିଲେ ଜଣେ କିଏ ବୁଢ଼ୀ ବୟସର, ଶୋଇ ଶୋଇ କାନିରେ ମାଛି ହୁରୁଡ଼ାଉଥିଲେ, ଏଥରକ ବସିପଡ଼ି ହାଇମାରି କହିଲେ, ''କେତେବେଳୁ ମୁଁ ଶୁଣୁଚି ତମମାନଙ୍କ କଥା । ତମ ଦୋଷ ନୁହେଁ, ଲୋକ ସବୁ ତିଳକୁ ତାଳ କରନ୍ତି । ବାବାଜି ସାଙ୍ଗେ ସତୀ ଯାଇଥିଲା ବୋଲି ଲୋକେ ଯୋଉ ଉଡ଼େଇ ଦେଲେ, ସେ ଲୋକ ଆଉ କିଏ କି, ସେଇ ଗାଆଁର ପରଶୁ ପଣ୍ଡା ଘର, ତାଙ୍କ ଦି'ଘର

ଭିତରେ ଜମିଜମା ଗଣ୍ଡଗୋଳ ଲାଗିଥିଲା ବୋଲି । ସେ ବାବାଜି ତା'ର ଗଲା, ତା'ପରେ ପରେ ସତୀର ଦେହ ଖରାପ ହୋଇଥିଲା ଯେ ତା ଭାଇମାନେ ଆସି ନେଇଯାଇଥିଲେ ତାକୁ ଉଆଲଟିଅରରେ ଡାକ୍ତର ଦେଖାଇ ଓଷୋକଷା କରିବେ ବୋଲି । ତେଣେ ବାବାଜି ପଛରେ ବି କେତେଜଣ ଗାଆଁର ଟୋକା ଲାଗିଥିଲେ, କଥା ଉଡ଼େଇ ଦେଲେ ...''

ଏତିକିରେ ବକ୍ତା ଜଣକ, ତେଜିଉଠି ସିଧା ହେଇ ବସିଲେ, କହିଲେ—''ମୋତେ ଦୋଷ ଦେବନାଇଁ ଗୋ ମାଇଁ । ସଂସାରଯାକ ଯାହା ଦେଖିଚି ଶୁଣିଚି, ସେକଥା ମୁଁ କହିଲି । ସତୀକାକୀଙ୍କର ଝିଅର ପ୍ରଥମ ନିର୍ବନ୍ଧ ଭାଙ୍ଗିଗଲା ତେବେ କାହିଁକି ? ତାଙ୍କର ବର ପୁଣି ତାଙ୍କୁ ଛାଡ଼ିଦେଇ ଆଉ ଗୋଟିଏ ବାହାହେଲେ କାହିଁକି ?''

''ତା'ର ଟିକିଏ ବାଏରୀ ଦୋଷ ଥିଲା, ଟିକିଏ ଆଲୁରୀ ରକମର, କିଏ ମନା କରୁଚି । ତା ବୋଲି ପୀତାମ୍ବର କିଛି କମ୍ କି ? ଆଉ ଗୋଟିଏ ବାହା ହେବାକୁ ତ ତା'ର ମନ ଥିଲା, ଆଳ ଗୋଟାଏ କଲା ...''

ବକ୍ତା ଅଣ୍ଟା ଭିଡ଼ିଲେ, ''ସେକଥା କହିପାରିବନି ତମେ । କିଏ ଦୋଷ ଦେଇପାରିବ ଭଲା ପୀତାମ୍ବର କକେଇଙ୍କ ଭଳି ଲୋକକୁ ?''

ଏତିକିରେ ଅନ୍ୟମାନେ ମଧ୍ୟସ୍ଥ ହେଇ ବୁଝାସୁଝା କରିଦେଲେ ଦି' ପାଖକୁ କୌଣସିମତେ । ସଞ୍ଜ ବେଳର ଚା' ଜଳଖିଆ ପାଇଁ ବି ଡକରା ଆସିଗଲା; ଆସର ଭାଙ୍ଗିଗଲା ।

ସେପାଖେ ସତୀବୋହୂ ବି ଉଠିଲେ ତାଙ୍କ ସଙ୍ଗୀ ସାଙ୍ଗରେ । ଏଠି ସଦ୍ୟ ଘଟିଯାଇଥିବା ସରଗରମ ପ୍ରସଙ୍ଗର କି ନିଜ ଅତୀତ ଜୀବନର ଛାପ କିଛି ତାଙ୍କଠି ଦିଶୁନଥିଲା । ନୀର କହିଲା ମୋତେ ଚୁପ୍‌ଚୁପ୍, ''ମୁଁ ଆଉରି ଜାଣିଚି, ତତେ କହିବି ପରେ ।'' ହେଲେ ମୋତେ ଲାଗିଥିଲା, ଅସଲ କଥାଟା ସତୀବୋହୂଙ୍କ ଛଡ଼ା କିଏ ଜାଣିଥିବ ? ତାଙ୍କରି ସାଙ୍ଗରେ ମୋର ଆଜି ରାତିରେ ଶଗଡ଼ ଗାଡ଼ିରେ ଯିବାର ଯୋଗ ଥିଲା, ଭଲା କିଏ ଜାଣିଥିଲା ? ସେ ପୁଣି ନିଜେ ଏବେ କହୁଚନ୍ତି ଆପେ—''ମୋ ପାଖେ ବର ଥିଲା ।''

ଏଥର କିନ୍ତୁ ଝିକରପୁର ଆଈ ଅନ୍ୟମାନଙ୍କୁ ଶାସନ କରିବାକୁ ସ୍ଥିର କରିସାରିଥିଲେ ଓ ବଡ଼ ପାଟିରେ ଶୁଣାଇଲେ—''ତମେ ସବୁ ଏମିତି ପୁରାଣକୁ ନେଇ ଏଣୁତେଣୁ ଗପିଲେ କି ଲାଭ ପାଇବ ? ସହଜେ ତ ଆମେ କଳିକାଳରେ ଜନ୍ମ

ହେଇଚେ, ସେ ଯୁଗର ମହିମା କାହୁଁ ଜାଣିବା ?'' ଏ ଧର୍ମବାଣୀ ସାଙ୍ଗକୁ ତୁହାକୁତୁହା ହାଇରେ ସମସ୍ତେ ଶୋଇବାର ଉପକ୍ରମ କଲେ, ଯା' ତା ଉପରେ ଆଉଜା ଆଉଜି ହେଇ ।

ଏତେବେଳେ ଗାଡ଼ି ରହିଗଲା ଅଚାନକ, ଆଗପାଖରୁ ଗଣ୍ଡଗୋଳ ଶୁଭିଲା । ସମସ୍ତେ ଓହ୍ଲେଇଲେ, ପାଟିତୁଣ୍ଡ ଭିତରେ ଶୁଣାଗଲା, ଗାଡ଼ି ଛତା ମାରିଲା । ସବା ଆଗ ଶଗଡ଼ ଆଗରେ କ'ଣ ଗୋଟାଏ ଜନ୍ତୁ ଦଉଡ଼ି ଚାଲିଗଲା, ବଳଦ ଡରିଯାଇ ଡେଇଁଲେ, ଗାଡ଼ି ଲେଉଟି ପଡ଼ିଲା । ଭାଗ୍ୟକୁ ସେ ଗାଡ଼ିରେ ଯୋଡ଼ିଏ ଟୋକା ଥିଲେ କେବଳ, ଆଉ ଟୋକେଇ ପତ୍ରରେ କ'ଣ ମାଲମତା ଥିଲା, କିଛି କ୍ଷତିହେଲା ନାହିଁ କାହାରି । ସମସ୍ତେ ଏକାଠି ହେଇ ପଡ଼ିଥିଲେ । ଘୋ ଘୋ ପାଟିତୁଣ୍ଡ ହେଲା, କିଏ ଜଣେ ଘଣ୍ଟାଟାଏ ବାଡ଼େଇଲା । ପାଟିଗୋଳ କଲେ କାଳେ ବଣଜନ୍ତୁ ଡରି ପଳେଇ ଯାଆନ୍ତି, ଯଦିଓ ଦି' ପାଖରେ ଏଠି ସେଠି ବୁଦାଗଛ ଓ ଜହ୍ନ ଆଲୁଅରେ ପରିଷ୍କାର ଦିଶୁଥିବା ଧାନକ୍ଷେତ ଛଡ଼ା କିଛି ନଥିଲା, ବଣଜନ୍ତୁଙ୍କର କିଛି ସମ୍ଭାବନା ହିଁ ଦେଖାଯାଉ ନଥିଲା । ବେଶ୍ ଅଧଘଣ୍ଟାକାଳ ଉଚ୍ଚାଟ, ଆଲୋଚନା ଚାଲିଲା । କିଛି ନୁହେଁ ମ ବିଲୁଆଟାଏ । ଭାଲୁଟାଏ ପରି ଦିଶିଲା କିନ୍ତୁ, ତମେ ସବୁ ତ ଶୋଇପଡ଼ିଥିଲ, ମୁଁ ଚାହିଁଥିଲି । ଯାଆ ମ, ଭାଲୁ କୁଆଡୁ ଆସିବ ଏଠି, ହେଇ ଖଣ୍ଡେ ଦୂରରେ ପରା ଗାଆଁଟିଏ ଦିଶୁଚି । ହେଲେ, କଳା ଛାଇଟିଏ ଚାଲିଗଲା ରାସ୍ତା ପାରିହେଇ, ମୁଁ ନିଜେ ଦେଖିଚି । ହେଇଥିବ, ସତକଥା, ଏଇଟା ମଶାଣି ଭୂଇଁଟା ପରା, ନଦୀଖଣ୍ଡିଟା ସେଇଠି ଦିଶୁଚି, ଦେଖୁନା । ଆରେ ଉଠରେ, ବସ ଯେଝାର ଯେଝା, ପଳେଇବା ଶୀଘ୍ର ଏଠୁଁ ।

ଅଧରାତିରୁ ବେଶୀ ହେଲାଣି । ଗଲା ଗାଆଁରେ ରହିଗଲେ ଆହୁରି କିଛି ଲୋକେ ଓ ଦିଇଟା ଗାଡ଼ି । ଏଥର ଗାଡ଼ି ମାତ୍ର ପାଞ୍ଚଟା କି ଛଅଟା । ଲୋକ ବି କମିଗଲେଣି, ଗାଡ଼ିମାନଙ୍କରେ ଜାଗା ଖାଲି ପଡ଼ିଲାଣି, ଅଳ୍ପ ଅଳ୍ପ ଲୋକ ଏଥର ବାଣ୍ଟିକୁଣ୍ଟି ହେଇ ବସିଚନ୍ତି । ଗଲା ଗାଆଁରେ ଓହ୍ଲେଇଥିବା ଲୋକଙ୍କର ଘରଲୋକେ ଉଠି ପଡ଼ିଥିଲେ, ଲୋକଙ୍କର ଭେଟାଭେଟି, ଦୁଃଖସୁଖ ଟିକିଏ, ପାଣିପିଆ, ଗାଡ଼ି ଛତାମରା ଚର୍ଚ୍ଚା ଆଦିରେ ପୁଣି ଅଧଘଣ୍ଟା ଯାଇଥିଲା । ଏଥର ଗାଡ଼ି ଅତି ଆସ୍ତେ ଚାଲିଥିଲା, ବଳଦ ଥକି ଯିବେଣି । ଦେହ ହାତ ପରାସ ହେଇଗଲାଣି, ଏତେ ଧକଚକ ହଲାଦୋହଲାରେ ମୋ ଆଖିକୁ ନିଦ ଆସୁନି ଆଦୌ, ଯଦିଓ ଥକା ଲାଗିଲାଣି । ଶୀଘ୍ର ଘରେ ପହଞ୍ଚି ବିଛଣାଟିଏରେ ଶୋଇପଡ଼ିବାକୁ ମନ ହେଉଛି । ହେମନାନୀ ଏଥର ତା ଶାଶୁ ସାଙ୍ଗରେ ବସିଛି, ତା ପିଲାଦିହେଁ ଶୋଇଛନ୍ତି ସେଇଠି । ମାୟାନାନୀ ତ ଓହ୍ଲେଇଗଲା । ଝିକରପୁର ଆଈ କୋଉଠି ବସିଲେ କେଜାଣି ।

ଆମ ଗାଡ଼ିରେ ଏଥର କେବଳ ମୁଁ, ନୀର ଆଉ ସତୀବୋହୂ । ଖାଁ ଖାଁ ଲାଗୁଚି ଏବେ, ଟିକିଏ ବେଳ ଆଗର ସେ ଗହଳଚହଳ ମଉଛବ ଭାବ ଆଉ ନାହିଁ । କେମିତି ଅଜବ ଦୁଃଖଟାଏ ବି ଲାଗୁଥିଲା, କେତେ ସୁନ୍ଦର ଏକାଠି ଚାଲିଥିଲେ, ଏତେ ନିଛାଟିଆ ଆଖି ପାଉନଥିବା ରାତିରେ ସମସ୍ତେ ଜକାଜକି ହେଇ, ଆଗଗାଡ଼ି ପଛଗାଡ଼ିରୁ ଡକାହକା ଚାଲିଥିଲା । କୋଉ ଗାଡ଼ିଆଳ ମୁହଁରୁ ଆସୁଥିବା ଗୀତର ଆଉ କୋଉ ଗାଡ଼ିରୁ ଉତ୍ତର ଶୁଭୁଥିଲା । ହଠାତ୍ ଏବେ ଆଉ କିଛି ନାହିଁ, ଶୂନ୍‌ଶାନ୍ ଲାଗୁଛି । ଖାଲି ଗହୀର ରାତି, ଫର୍ଚ୍ଚା ଜହ୍ନ, ଆଉ ଝିଁ ଝିଁ ଝିଁ ଝିଁ ଚାରିଆଡୁ ଝିଙ୍କାରି । ରାସ୍ତା ଦି' ପାଖେ ଜାଁ ଜାଁ ଝୋଟିଆ ଗଛ, ବୁଦୁବୁଦିକିଆ ଜଙ୍ଗଲରେ ଜୁଳୁଜୁଳିଆ ପୋକ ଅସୁମାରି । ହଲି ଦୋହଲି ଆମେ ଚାଲିଥାଉ ସତେକି କେଉଁ ଗୋଟାଏ ଅଜଣା ଅବାସ୍ତବ ରାଜ୍ୟ ଭିତରକୁ ।

ନୀର ଢୁଳଉଥାଏ । ସତୀବୋହୂ ଫେରିଯାଇଥାନ୍ତି ତାଙ୍କ ଚିତ୍ରପଟ ମୁଦ୍ରାକୁ । ନୀରକୁ ହଲେଇ ଡାକିଲି, "ନୀର, ଶୋ'ନା । ଗପଟିଏ କହ ।" ନୀର ଭିଡ଼ିମୋଡ଼ି ହେଲା, ଅଚାନକ ମନେପଡ଼ିଲା ପରି କହିଲା, "ସେଇ ଯୋଉଟା ପାରି ହେଲା ରାସ୍ତା, ଗାଡ଼ି ଛଡା ମାରିଲା ଯାହାକୁ ଦେଖି, ସେଇଟା କ'ଣ ଥିଲା କହିଲୁ ?" ମୁଁ ଶୁଖିଲା ସ୍ୱରରେ ଉତ୍ତର ଦେଲି, "ଜାଣିଚି । କେତେଲୋକ ତ କହିଲେ ସେଇ ଏକାକଥା । ହେଲେ, ବାଟଘାଟରେ ରାତିରେ ଗଲାବେଳେ ସେ ସବୁ କଥା ବେଶୀ ପକେଇବା ଭଲ ନୁହେଁ, ଶୁଣିନୁ ନି ଆଉ ଯାହା କହିଲେ ? ସେମାନଙ୍କୁ ଡାକିଲା ପରି ହୁଏ ।" ନୀର ବିଗିଡ଼ିଗଲା, କହିଲା—"ହଉ, ତୁ ବସି ବସି ଆଈ କହିଥିବା ମନ୍ତ୍ର ଜପ କରୁଥା, ମୁଁ ଶୋଉଚି ।" ନୀର ଏଥର ନିଜ ପାଇଁ ଜାଗା ଟିକିଏ କରି ଗଡ଼ିପଡ଼ିଲା । ସତୀବୋହୂ ଧ୍ୟାନ ଭାଙ୍ଗିଲା ପରି ଦେଖିଲେ ଟିକିଏ, ଘୁଞ୍ଚିଯାଇ ନୀରକୁ କହିଲେ, "ଭଲକରି ଗୋଡ଼ ଲମ୍ବେଇ ଶୋ ।" ମୋତେ ପଚାରିଲେ, "ତୋତେ କ'ଣ ଶଗଡ଼ରେ ନିଦ ଲାଗୁନି କି ସହରୀ ଝିଅ ? ଏଠିକି ଆଗପାଖକୁ ଚାଲିଆ, ଦେଖି ସଂସାରଟା କେମିତି ଦିଶୁଚି ଜହ୍ନ ଭଳିଆରେ ।" ମୁଁ ଉଠି ଆସିଲି ତାଙ୍କ ପାଖକୁ, ରାସ୍ତା ଦି' ପାଖେ ଗଛବୃଦାମାନ ଉପରୁ ସ୍ପଷ୍ଟ ଦିଶୁଥାଏ, ତା ଡାଳପତ୍ରର ଗାଢ଼ ଅନ୍ଧାର ଭିତରେ ଜଳୁଥାନ୍ତି ଲିଭୁଥାନ୍ତି ଅଜସ୍ର ଜୁଳୁଜୁଳିଆ, ଆକାଶ ପାଖ ହେଇ ଆସିଥିଲା ଭଳି । ହଳିଆଟା ବସି ଢୁଳଉଚି । ସତୀବୋହୂଙ୍କ ଆଖିରେ ବୋଧେ ନିଦ ନାହିଁ, ସିଧା ଆଉଜି ବସି ଧୀରେ ଦୋହଲୁଛନ୍ତି ଗାଡ଼ି ସାଙ୍ଗେ । ବାସ୍ତବ ଦୁନିଆ ସାଙ୍ଗେ ଏଇ ସୂତାଖିଏ ଲେଖାଁ ଯୋଗାଯୋଗ ମୋର । ଭୟ ଲାଗିଲା । ଏମାନେ ନ ଚେଇଁଲେ, ଚେଇଁଚନ୍ତି ବୋଲି ନ ଜାଣିଲେ ମୁଁ ବୋଧେ ଚୁପ୍‌କିନି ଖସିଯିବି ଆଉ କେଉଁ ରାଜ୍ୟକୁ, ଜୀବନକୁ ଫେରିବିନି ଆଉ । ସତୀବୋହୂ ଏମିତି ନିଶ୍ଚୁପ ବସିଚନ୍ତି ବା କାହିଁକି ?

କେତେବେଳେ ପରେ ଆସ୍ତେ କରି ଡାକିଲି, "ବୋହୂ ଗୋ ! ତମକୁ ଗପ ଆସେ କି ?" ମୋତେ ଡର ଲାଗୁଥିଲା ସେ ସତରେ ଅଛନ୍ତି ନା ନାହିଁ ବୋଲି । ସେ ମୋତେ ଫେରି ଅନେଇଲେ । ମୁହୂର୍ତ୍ତକ ଲାଗି ମୋ ଭିତରେ କାଲୁଆ କ'ଣ ଗୋଟାଏ ବହିଗଲା । ସେ ଫିକ୍‌କିନି ହସିଦେଲେ, କହିଲେ, "ଡରୁଚୁ କିଲୋ ?" ମୁଁ ନିଜକୁ ସମ୍ଭାଳୁଚି, ସେ ପୁଣି କହିଲେ, "ତୁ ପାଠୁଆ ଝିଅ । ଆମେ ଏତେ ଲୋକ ଅଛୁ, ଡରୁଚୁ କ'ଣ ? ତୁ ବି ଶୋଇପଡ଼ ଟିକେ, ଏଇଠି ଜାଗାଅଛି, ଗଡ଼ିପଡ଼ ।"

ମୁଁ କହିଲି, "ମୁଁ ଡରିନି ଜମା । ମୋତେ ନିଦ ଲାଗୁନି । ତମେ ବି ତ ଶୋଉନ । ଗପଟାଏ କହନ୍ତ ନି ?"

"ତୁ କହୁନୁ ତୋ କଥା । ତମ ସହର ବଜାର, ଇସ୍କୁଲ୍ ପାଠ କଥା ।"

ମନେ ପକାଇଲି, କାହିଁ କେତେଦୂରର ପାଉଁଶିଆ ଚିତ୍ରଗୁଡ଼ିଏ ଭଳି ଦିଶିଲା ! କହିଲି—"ସବୁଦିନ ସ୍କୁଲ ଯାଏ ପାଠ ପଢ଼ିବାକୁ, ପୁଣି ଘରକୁ ଆସେ, ପାଠ ପଢ଼େ । ସେଥିରେ ଗପ କିଛି ନାହିଁ । ତମେ କହ ।"

"କି ଗପ ଶୁଣିବୁ ଝିଅ ?"

ମୋର ମନେପଡ଼ିଗଲା, "ସେତେବେଳେ କହୁଥିଲ, ତମକୁ ବର ମିଳିଥିଲା ବୋଲି । ଏମିତି ଥଟ୍ଟାରେ କହୁଥିଲ ?"

"ନାଇଁ ତ । ମୋ ପାଖେ ସେ ବର ଥିଲା । ତୋ ପାଖେ ନାଇଁ ? ଝିଅଦିନେ ଥାଏ ତ ।"

"କ'ଣ ଥାଏ ? କି ବର ?" ମୋ ଛାତିର ଦୁକ୍‌ଦୁକ୍ ମୁଁ ଜାଣିପାରୁଥିଲି ।

ସେ ମୋତେ ଗାଢ଼କରି ଅନେଇଲେ, ଅଳ୍ପ ହସି କହିଲେ, "ତୁ ଜାଣିପାରୁନୁ ଏଯାଏଁ, ତୋତେ ବର ମିଳିଗଲାଣି ବୋଲି ?"

ମୁଁ ଥତମତ ହେଇ କହିଲି, "ମୁଁ ବରଦାନ କଥା କହୁଥିଲି । ଦେବତା, ଋଷିମାନେ ଯୋଉଟା ଦିଅନ୍ତି ।"

ସେ ମୁଣ୍ଡ ଟୁଙ୍ଗାରି ଚୁପ୍ ରହିଲେ । ମୋତେ ଭୟ ଲାଗିଲା, ପୁଣି ସେ ଫେରିଯିବେ କି ତାଙ୍କ ଚିତ୍ରପଟ ଭାବକୁ । ପଚାରିଦେଲି ସାହସ କରି "ତମ ଘରକୁ ଯେଉଁ ବାବାଜି ଆସିଥିଲେ, ସେଇ ଦେଇଥିଲେ ତମକୁ ବର ?"

ସେ ମୁହଁକୁ ଅନେଇ ମୁଣ୍ଡ ହଲେଇ ନାହିଁ କଲେ । କହିଲେ, "ସେତେବେଳକୁ ତ କେତେ ଡେରି ହେଇଯାଇଥିଲା । ବରଦାନ କଥା ମୁଁ ଭୁଲିସାରିଥିଲି କୋଉ କାଳୁ ।"

ପୁଣି ତାଙ୍କ ଚୁପ୍ ଭାଙ୍ଗିବାକୁ ମୁଁ ଅଧୈର୍ଯ୍ୟ ହେଇ ପଚାରିଲି, ''ତା'ହେଲେ କ'ଣ ସେ ଅଭିଶାପ ଦେଲେ ?''

''କିଏ ଅଭିଶାପ ଦେଲା ?''

ମୁଁ ଛେପ ଢୋକି କଷ୍ଟରେ କହିଲି, ''ସେଇ ବାବାଜି, ଯିଏ—''

ସେ ଜମା ରାଗିଲେ ନାହିଁ। ହସି କହିଲେ, ''ତୋର ତ ବଡ଼ ଘଉକୀ, ପାଠୋଇ ଝିଅ। ତତେ କହିବି ସବୁ କଥା। ହେଲେ, ଅଭିଶାପ କିଏ, ବରଦାନ କିଏ ? କୁନ୍ତୀଙ୍କ ପାଖକୁ ଯୋଉ ସୂର୍ଯ୍ୟଦେବ ଆସିଲେ, ସେଇଟା ବରଦାନ ନା ଅଭିଶାପ ?''

ହତାଶ ସ୍ୱରରେ କହିଲି, ''ଜାଣିନି।''

ସେ ମୋ ମୁହଁକୁ ଅନେଇ ରହିଲେ, ମୋ ମୁହଁରେ ଜହ୍ନ ଆଲୁଅ ପଡୁଥାଏ, ତାଙ୍କ ମୁହଁ ମୋତେ ଦିଶୁନଥାଏ। ମୋ ଉଦ୍‌ବିଗ୍ନ ଭାବକୁ ତଉଲି ସାରିଲା ପରେ ସେ ହସିପକାଇଲେ, କିଛିବେଳ ଆଗରୁ ହେମନାନୀ ହେରିକାଙ୍କ ସାଙ୍ଗେ ଆମେ ସବୁ ଯେମିତି ହସୁଥିଲୁ, ଖିଲିଖିଲି, ଝିଅମାନଙ୍କ ପରି। କହିଲେ, ''ବର କୋଉ ଝିଅ ପାଖରେ ନଥାଏ କହିଲୁ, ଯୁଆନ୍ ଦିନରେ ? ତୁ କ'ଣ ଭାବୁନଥିବୁ, ମୁଁ ଯାହାକୁ ଡାକିଦେବି ସିଏ ଆସିଯିବ ମୋ ପାଖକୁ ?''

ମୁଁ ଅସହାୟ ଭାବେ ଅଳ୍ପଟିକିଏ ହସିଲି ବାଧରେ, ମୁଣ୍ଡ ହଲାଇ ନାହିଁ କଲି। ସେ ଏଥର ପ୍ରସ୍ତୁତ ହେଲା ପରି ବସିଲେ, ଆଖିବୁଜି ଟିକିଏ ବେଳ ଝୁଲିଲେ ଆଗପଛ, କ'ଣ ମନେପକେଇଲା ଭଳି। ପୁଣି ପଦାକୁ ଅନେଇ ଆରମ୍ଭ କଲେ, ''ହଉ କହୁଚି। ଶୁଣ୍ ମୋ ଗପ। ଝିଅ ଦିନରେ, ତୋ'ରି ବୟସରେ, କି ଆଉରି ପିଲାଦିନୁ, ମୁଁ ସୋମବାର ଉପାସ ରଖୁଥିଲି, ଶିବମନ୍ଦିରକୁ ଯାଉଥିଲି, ଭଲ ବରଟିଏ, ସ୍ୱାମୀଟିଏ ପାଇବି ବୋଲି। ମୋ ମା ମୋତେ ଶିଖେଇଥିଲା ପୂଜାବ୍ରତ। ହେଲେ ମୁଁ ଜାଣିଥିଲି, ମୁଁ ଯାହାକୁ ଡାକିବି ସିଏ ବଳେ ଟାଣିହେଇ ଆସିବ ମୋ ପାଖକୁ। ସେଇଥିଲାଗି ତ ମୁଁ ଡରିମରି ରହିଥାଏ ଲୋ ଝିଅ। ଯିଏ ଅନାଏଁ, ଆଖି ନୁଆଁଇଦିଏ ମୁଁ। ତୁ ବି ସେଇଆ କରୁଥିବୁ, ନା ନାଇଁ ? ଅନେଇ ଦେବି ଯଦି ଛାଏଁ ସିଏ ପାଖକୁ ଚାଲିଆସିବ କାଳେ। ଆଉ ସେଇଠୁ କ'ଣ ହେବ ?''

''ସେଇଠୁ ?''

''କୁନ୍ତୀ କଥା ସିନା ପୁରାଣରେ ଅଛି ବୋଲି, ନହେଲେ ଏମିତି ଝିଅ ଉଜୁଡ଼ି ଯାଆନ୍ତି, ଯୁଆନ୍ ଦିନରେ ବରଦାନକୁ ଆକଟି ରଖିପାରନ୍ତି ନାହିଁ ବୋଲି। ଆସିଲା ଲୋକ ତ ଲେଉଟିଯାଏ ମୁହଁ ପୋଛି ଦେଇ, ତା'ର ଭଲା କିଛି କ୍ଷତି ହୁଏ ?

ସେଇଥିପାଇଁ ତ, ପୋତି ପକେଇବାକୁ ହୁଏ ବରଦାନକୁ, କୋଉ ଅନ୍ଧାର ଗମ୍ଭୀରୀ ଘରେ ଲୁଚେଇ ଦେଇ ଭୁଲିଯିବାକୁ ହୁଏ ।'

''ହୁଁ !''

''ମୁଁ କେତେ ସଜବେଶ ହେଉଥିଲି, ତେଲ ହଳଦୀ ଲଗେଇ ଗାଧୋଉଥିଲି, କେତେ ସୁନ୍ଦର ରୂପ ଥିଲା ମୋର । ଭାବୁଥିଲି, ଯିଏ ଶେଷରେ ଆସିବ, ମୋତେ ବାହାହେବ, ଧନ୍ୟ ହେଇଯିବ । ତାକୁଇ ମୁଁ ଅନେଇବି, ଇଚ୍ଛିବି । ଆଉ କାହାକୁ ନୁହେଁ । ମୋର ବରଦାନ ସଫଳ ହେବ ।''

''ସେଇଠୁ ?''

''ସେଇଠୁ କ'ଣ ? ସେ କ'ଣ ଆସିଥାନ୍ତା ସତରେ ନା କ'ଣ ? କିଏ ଆସେ ?''

''ତମେ ପରା ବାହାହେଲ ବଡ଼ ଘରେ । କେଡ଼େ ସୁନ୍ଦର କନ୍ଦର୍ପ ସମାନ—''

''ଧୁତ୍ !''

ସେ ଚୁପ୍ ରହିଲେ । ମୁଁ ଶେଷକୁ ପଚାରିଲି, ''କ'ଣ ହେଲା, ସେ ଭଲ ଲୋକ ନଥିଲେ କି ସତୀବୋହୂ, ତମ ସ୍ୱାମୀ ?''

''ଭଲ ଲୋକ ଥିଲେ । ମୋ ବାପା ଭଲ ଘର ଦେଖି ମୋର ବାହାଘର କରିଥିଲେ । କେଡ଼େ ଆଡ଼ମ୍ବରରେ, କେଡ଼େ ସୁନ୍ଦର ଭୋଜିଭାତ ହୋଇଥିଲା, ଦଶଖଣ୍ଡ ଗାଆଁର ଲୋକ ଖାଇଥିଲେ ।''

''ସେଇଠୁ ? ତମେ ପରା ତମ ବର, ମାନେ ବରଦାନ କଥା କହୁଥିଲ !''

''ସେକଥା ମୁଁ ଭୁଲିଗଲି କାଳକ୍ରମେ । ମୋର ପିଲାଛିଲା ହେଲେ । ସଂସାର ଝଂଝାଳ ବୋହୂ ଖଟଣି ଭିତରେ ଭୁଲିଗଲି ମୋ ପାଖରେ କେବେ ବର ଥିଲା ବୋଲି ।''

''ତମ ସ୍ୱାମୀଙ୍କ ପାଖରେ ବର କାଟୁକଲାନି ?''

''ମୋ ସ୍ୱାମୀଙ୍କ ମୁହଁକୁ ତ ମୁଁ ଚାହିଁନଥିଲି କେବେ । ସେ ବି ମୋ ମୁହଁକୁ କ'ଣ କେବେ ଅନେଇଥିଲେ, ନା ଛାଏଁ ଟାଣିହେଇ ଆସିଥିଲେ ? ରାତିର ଅନ୍ଧାରରେ, ଶୋଇଲା ଘରେ ଆମର ଭେଟ ହେଉଥିଲା ।''

ଦି' ମିନିଟ୍ ଯାଇଥିବ, ମୋତେ ଯୁଗଟିଏ ପରି ଲାଗିଲା । କହିଲି, ''ସତୀବୋହୂ, ସେଇ ବାବାଜି କଥା କହ । ମାହାପ୍ରଭୁ ରାଣ, ମୁଁ କାହାକୁ କହିବିନି ।''

''ବାବାଜି ଆସିଲା ବେଳକୁ ଆଉ ମୋ ରୂପ କଥା, ମୋ ଦେହ କଥା, ବରଦାନ କଥା କିଛି ହେଲେ ମୋର ମନେ ନଥିଲା । ସୁନାଗହଣା ପିନ୍ଧୁଥିଲି ସିନା, ତେଲ ହଳଦୀ

ଆଉ ଲଗାଉ ନଥିଲି । ଗୋଟିଏ ଗୋଟିଏ ବାଳ ପାଚିଆସୁଥିଲା । ମୋ ଝିଅର ନିର୍ବନ୍ଧ ହେଇଯାଇଥିଲା, ବଡ଼ପୁଅର ଗଳା ଭାଙ୍ଗୁଥାଏ ସେଇବର୍ଷ ।''

''ସେଇଠୁ ବାବାଜି ଆସିଲେ ତମ ଗାଁକୁ ?''

''ବାବାଜି କଥା କଣ କହିବି ଲୋ ଝିଅ, କହିଚି ତ ସେଯାଏଁ ମୁଁ କାହାରି ମୁହଁକୁ ଚାହିଁ ନଥିଲି । ମୁହଁକୁ ଚାହିଁବା କଥା ଆଉ ମନକୁ ଆସୁନଥିଲା । ସେଇ ପ୍ରଥମ କରି ଚାହିଁଲି ତାଙ୍କ ମୁହଁକୁ ।''

''ସେଇଠୁ ?''

''ସେ ଭାଗବତ କଥା କହୁଥିଲେ । କୃଷ୍ଣଲୀଳା କଥା କହୁଥିଲେ । ଗାଁଯାକର ଲୋକେ ଅମୃତ ପିଇଲା ପରି ତାଙ୍କ କଥାକୁ ପିଇଯାଉଥିଲେ ।''

''...''

''ସେ କଥା କହିଲା ବେଳେ ଗୋପଲୀଳା ସବୁ ଗୋଟି ଗୋଟି ଚିତ୍ର ହେଇ ଉଭା ହେଇଯାଉଥିଲା ଆଖି ଆଗରେ—ତାଙ୍କ ମୁହଁରେ, ଆଖିରେ । ଲୋକ ଭୋଳ ହେଇଯାଉଥିଲେ । ତାଙ୍କ ପାଦ ତଳେ ପଡୁଥିଲେ । ବୁଢ଼ୀଲୋକ, ଝିଅ ବୋହୂ ତାଙ୍କ ପାଖକୁ ପାଳିକରି ଖାଇବା ନେଇ ଯାଉଥିଲେ, ପୁରୁଷ ଲୋକେ ତାଙ୍କ ଘରକୁ ଝାଡୁ କରି ଦେଉଥିଲେ, ପାଣି ଆଣି ଦେଉଥିଲେ, ପୁରୁଷ କ'ଣ ସ୍ତ୍ରୀ କ'ଣ ତାଙ୍କ ଗୋଡ଼ ଘଷିଦେବା ଲାଗି ବାଦ କରୁଥିଲେ ।''

''ସେଇଠୁ ?''

''ଆମରି ଘରେ ରହୁଥିଲେ ସେ । ଦାଣ୍ଡଘର ପାଖ ବଖରାରେ । ଖାଇବା ନେଇ ମୁଁ ବି ଦେଇ ଆସୁଥିଲି ତାଙ୍କୁ ଅନ୍ୟ ସ୍ତ୍ରୀମାନଙ୍କ ପରି, କେବେ ଗୋଡ଼ ଘଷି ଦେଉଥିଲି, ପଙ୍ଖା କରି ଦେଉଥିଲି, ଅଇଁଠା ବାସନ ନେଇ ଫେରୁଥିଲି ।

''...''

''ଦିନେ ସେ ମୋ ହାତ ଦେଖିଲେ, କହିଲେ ତୋ ଝିଅ ଦିହେଁ ବଡ଼ଘରେ ବାହା ହେବେ, ପୁଅ ଦିହେଁ ସୁଖରେ ଘରଦ୍ୱାର କରିବେ । ତୋ'ର ଆଉ କିଛି ଚିନ୍ତା ନାହିଁ । ତୁ ଭାଗ୍ୟବତୀ ।''

ମୁଁ ଛାତି ରୁନ୍ଧି ଶୁଣୁଥାଏ, କାଳେ ମୋ ନିଃଶ୍ୱାସ ଶୁଭିଯିବ ସତୀବୋହୂଙ୍କୁ ବୋଲି । ସେ କହିଲେ ପୁଣି, ''ତାଙ୍କ ମୁହଁକୁ ମୁଁ ଅନେଇଲି, ସେଇ ପ୍ରଥମକରି ଜାଣ । ମୋ ହାତ ରେଖା ପଢୁଥାଆନ୍ତି ସେ ଏମିତି, ମୋ ମୁହଁକୁ ପଢ଼ି ପଢ଼ି କହୁଥାଆନ୍ତି ।''

ସତୀବୋହୂ ହଠାତ୍ ନିଜ ମୁହଁରେ ଲୁଗା କାନି ଚାପିଲେ, ସୁଁ ସୁଁ ହେଇ ନାକ ପୋଛିଲେ, ଅଧା ଜହ୍ନ ଆଲୁଅରେ ତାଙ୍କ ମୁହଁ ଦିଶୁନଥାଏ । କହିଲେ, ''ସେଇଠୁ ତାଙ୍କ ମୁହଁକୁ ସେମିତି ଅନେଇଥାଏ, ମୋତେ ଢଳଢଳ ଦିଶିଗଲା ମୋ ବରଦାନର ସ୍ୱରୂପ । ଏତେଦିନ କାଳ କୋଉଠି ଲୁଚି ରହିଥିଲା ସେ, କୋଉ ବାଗରେ ଆସି ମୋତେ ଗୋଟିପଣେ ଗ୍ରାସ କରିପକାଇଲା । ସତେକି ମୋର ଆଉ କିଛି ଚିନ୍ତାଦକ ନାହିଁ ସଂସାରରେ । ଖାଲି ଏତିକି ଦିଶିଲା ମୋତେ, ଆଗରେ ମୋର ତେଜମୟ ଦେବତା ।''

''ତା'ପରେ ?''

ଆଉ କିଛି ଉତ୍ତର ନାହିଁ । ବଳଦ ଚାଲୁଥାନ୍ତି ଧୀରେ ଧୀରେ, ହଲି ଦୋହଲି ଚାଲିଥାଏ ଗାଡ଼ି । ମୁଁ ସାହସ ବାନ୍ଧି ପଚାରିଲି, ''ତମେ ସତରେ ଘରଛାଡ଼ି ଚାଲିଯାଇଥିଲ ସତୀବୋହୂ ?''

ବାହାର ଦୃଶ୍ୟରେ ତାଙ୍କ ଧ୍ୟାନ ଥିଲା ଏତେବେଳେ । କହିଲେ, ''ଦେଖୁନୁ । କେମିତି ଲାଗୁଚି ଆଜି ରାତିରେ, କେମିତି ଦିଶୁଚି ସଂସାରଟା କହୁନୁ ? ଆଜି ଦି'ପହର ଘୋ'ଘା କଥା ମନେପଡ଼ିଲେ ମିଛ ପରି ଲାଗୁନି ? କାଲି ସକାଳକୁ ଏଇକଥା ନଥିବ ବୋଲି କଣ ମନକୁ ଆସୁଚି ?''

ମୁଁ କିଛି କହିଲିନି । ଅପେକ୍ଷା କଲି । ଖାଲି ଝିଂକାରି ଝିଁ ଝିଁ ସାଙ୍ଗକୁ ଶଗଡ଼ ଚକର ସରୁ କେଁ ସ୍ୱରଟାଏ ଲମ୍ବି ଚାଲିଥାଏ କେବଳ ।

ମୋ ଦେଇ ଆଉ ରହିହେଲାନି, ପଚାରିଲି, ''ତମେ ତା ବୋଲି ଘରଛାଡ଼ି ବାହାରିଗଲ ? ଘରଦ୍ୱାର, ପିଲାଝିଲା ସମସ୍ତଙ୍କୁ ଛାଡ଼ି ?''

''ସୂର୍ଯ୍ୟ ଦେବତା ଯଦି ସେଦିନ କୁନ୍ତୀକୁ କହିଥାନ୍ତେ, ଆ ଚାଲିଆ ମୋ ସାଙ୍ଗରେ, ବାକି ସବୁକଥା ଭୁଲିଯା, ଆ ଚାଲିଆ ତୁ ବୋଲି, କଣ କରିଥାନ୍ତା ବିଚାରୀ ? ନାହିଁ କରିପାରିଥାନ୍ତା ? ଛାର ମରଶରୀରର ଝିଅଟାଏ ?''

କେତେବେଳକେ ମୁଁ ପଚାରିଲି, ''ତା'ପରେ ପୁଣି କ'ଣ ହେଲା ବୋହୂ ?''

କିଛି ଉତ୍ତର ନାହିଁ ।

''କେମିତି ପୁଣି ଫେରିଲ ତମେ ? ବାବାଜି କୁଆଡ଼େ ଗଲେ ?''

ଉତ୍ତର ନଥିଲା । ସେ ଦୂରକୁ ଚାହିଁଥିଲେ, ଆସ୍ତେ ଦୋହଲୁଥାଏ ତାଙ୍କ ଦେହ ଗାଡ଼ି ସାଙ୍ଗରେ । ବାହାରେ ଭୋର ହେଇଆସୁଥିଲା ବୋଧେ, ଜହ୍ନ ଆଲୁଅ ଫିକା ପଡ଼ି ଆସୁଥିଲା । ମୋ ପାଟିରୁ ବାହାରିଗଲା ପ୍ରଶ୍ନଟିଏ, 'ତମକୁ ଦୁଃଖ ଲାଗେ କି ଗୋ, ସେ କଥା ଭାବିଲେ ? ତମେ ପସ୍ତେଇଲ କି ପରେ ?''

ସେ ଫେରି ଚାହିଁଲେ । ଭୋରର ହାଲୁକା ଆଲୁଅ ଏବେ ଫିଟି ଆସୁଥିଲା । କହିଲେ, ''ଆମ ଗାଆଁ ଆସିଗଲା ଝିଅ, ହେଇଟି ଦିଶିଲାଣି, ଯା'ପରେ ତମ ଗାଆଁ ।'' ପୁଣି ଜିନିଷପତ୍ର ଦି'ଟା ଏକାଠି କରୁ କରୁ ସେ କହିଲେ ମୋତେ, ''ଏମିତି ରାତିରେ ଯିବାକୁ ତୋତେ ଆଉ ମିଳିବ କିଲୋ ସହରୀ ଝିଅ ? ମନେନେନିଲେ ପସ୍ତେଇବୁ କି, ପୂରା ଗୋଟିଏ ରାତି କଷ୍ଟରେ ନ ଶୋଇ ପୁହାଇ ଦେ'



ଜନ୍ମ ୧୯୫୧, ସମ୍ବଲପୁର । ରାଉରକେଲା ରେ ସ୍କୁଲ୍ ଶିକ୍ଷା, ରେଭେନ୍‌ଶା'ରୁ ବି.ଏ. ଓ ବାଣୀବିହାରରୁ ଇଂରାଜୀରେ ଏମ୍.ଏ. । ଜବଲପୁରରୁ ପି.ଏଚ୍.ଡି. ।

ତିନିଗୋଟି ଗଳ୍ପ ସଂକଳନ 'ଦ୍ୱୀପ ଓ ଅନ୍ୟାନ୍ୟ ଗଳ୍ପ' (୧୯୭୯), 'ଜହ୍ନରାତି' (୧୯୮୬) ଓ ଦେଖଣାହାରୀ (୧୯୯୨) । ଉପନ୍ୟାସ 'ପକ୍ଷୀଜନ୍ମ' (୧୯୮୧) ଧାରାବାହିକ ଭାବେ 'ସୁଚରିତା' ରେ ପ୍ରକାଶିତ । ହିନ୍ଦୀରେ ଅନୁଦିତ ଗଳ୍ପ ସଂକଳନ 'ସେତୁବନ୍ଧ' (ଭାରତୀୟ ଜ୍ଞାନପୀଠ, ନୂଆଦିଲ୍ଲୀ, ୧୯୯୦) । ପତ୍ର ପତ୍ରିକାରେ କବିତା ତଥା ଇଂରାଜୀରେ ରଚନା ମଧ୍ୟ ପ୍ରକାଶିତ । ଇଂରାଜୀ କବିତା ସଂକଳନ **In Their Own Voice (Penguin India, 1993)** ରେ କବିତା ପ୍ରକାଶିତ ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର (୧୯୯୦), ପୁସ୍ତକ ମେଳା ପୁରସ୍କାର (୧୯୯୦), ଝଙ୍କାର ପୁରସ୍କାର (୧୯୯୫) ଓ ସର୍ବଭାରତୀୟ 'କଥା' ପୁରସ୍କାର (୧୯୯୬) ପ୍ରାପ୍ତ ।

୧୯୭୩ ରୁ ମଧ୍ୟପ୍ରଦେଶର ବିଭିନ୍ନ ସହର ତଥା ଦିଲ୍ଲୀରେ ରହଣି । ସମ୍ପ୍ରତି ଭୋପାଳରେ ସ୍ୱାମୀ ଓ ତିନୋଟି ସନ୍ତାନଙ୍କ ସହ ଅବସ୍ଥାନ ଓ ସ୍ନାତକୋତ୍ତର ମହିଳା କଲେଜରେ ଇଂରାଜୀ ବିଭାଗର ମୁଖ୍ୟ ଭାବେ କାର୍ଯ୍ୟରତ ।